# ଝରକା ପାଖରେ ଜହ୍ନ

(ଆଧୁନିକ ଗୀତିକବିତା ସଂକଳନ)

ଶ୍ରୀମତୀ ପ୍ରମିଳା ପତି

ପ୍ରକାଶକ

ସୌରଭ ପବ୍ଲିକେଶନ୍

# ଝରକା ପାଖର ଜହ୍ନ


ପ୍ରକାଶକ :
ଶ୍ରୀ ଶଶିଭୂଷଣ ତ୍ରିପାଠୀ
ସୌରଭ ପବ୍ଲିକେଶନ୍
ସାମନ୍ତ ସାହି (ନିୟୁ କଲୋନୀ), କଟକ-୭୫୩୦୦୧

ପ୍ରଥମ ସଂସ୍କରଣ : ଗଣେଶ ଚତୁର୍ଥୀ, ୨୦୧୨

ଅକ୍ଷର ସଜା : ମୀନାକ୍ଷୀ ଡି.ଟି.ପି., କଟକ

ପ୍ରଛଦପଟ : ଶ୍ରୀ ଶଶିକାନ୍ତ ରାଉତ

ମୁଦ୍ରଣ: ଶୁଭମ୍ ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ୮୦ ଟଙ୍କା ମାତ୍ର


## JHARAKA PAKHARA JANHA


Writer:
Smt. Pramila Pati

Publisher :
Sri S.B.Tripathy
Saurav Publication
Samanta Sahi, (New Colony) Cuttack - 753001

First Edition : September, 2012

Letter Setting:
Minakshi D.T.P., Cuttack

Cover Design:
Sri Sashikanta Rout

Printed at:
Subham Printers, Cuttack

Price: Rs.80.00 only

# ଦୂର ଦୃଷ୍ଟିରେ 'ଝରକା ପାଖର ଜହ୍ନ'

ଗୀତିକବିତା ଗୋଟିଏ ଗୋଟିଏ ମାର୍ମିକ ଉଚ୍ଛ୍ୱାସର ଅଭିବ୍ୟକ୍ତି। ସଂକ୍ଷିପ୍ତତା ଏହାର ଧର୍ମ। ସ୍ୱତଃସ୍ଫୂର୍ତ୍ତତା ଏହାର ଲକ୍ଷଣ। ସରଳ ଭାଷା ଏବଂ ଭାବ ଏହାର ପ୍ରାଣ, ଶୈଳୀ ଏହାର ଅଳଙ୍କାର। ଗୀତିକବିତା ସୃଷ୍ଟିକୁ ରୂପଦିଅନ୍ତି ଗୀତିକବି, କଣ୍ଠଶିଳ୍ପୀ, ବାଦ୍ୟଶିଳ୍ପୀ, ସ୍ୱରକାର ଏବଂ ସଂଗୀତ ନିର୍ଦ୍ଦେଶକ। ଏମାନଙ୍କର ମିଳିତ ପ୍ରଚେଷ୍ଟାରେ ଗୀତିକବିତା ହୁଏ ହୃଦୟସ୍ପର୍ଶୀ। ଶ୍ରୋତାମାନଙ୍କ ପାଖରେ ପହଞ୍ଚିଲେ ଯାଇ ଗୀତିକବିତାର ସାର୍ଥକତା। ତେଣୁ ଗୀତିକବିତା ଗାନ ଯୋଗ୍ୟ ହେବା ଏକାନ୍ତ ବିଧେୟ। ଭାବପୂର୍ଣ୍ଣ, ସରଳ ସ୍ୱତଃସ୍ଫୂର୍ତ୍ତ ପ୍ରଭାବଶାଳୀ ଭାଷା ଏବଂ ସୁମଧୁର ସ୍ୱର (ସଂଗୀତ) ଗୀତିକବିତାକୁ କରେ ଲୋକପ୍ରିୟ। ସେଥିପାଇଁ କୁହାଯାଏ– ଭାଷା ଏବଂ ସଂଗୀତର ଯୁଗଳବନ୍ଦୀ ହେଉଛି ଗୀତିକବିତା। ଏହା ସଂକ୍ଷିପ୍ତ ହେଲେ ମଧ୍ୟ ବିନ୍ଦୁରେ ସିନ୍ଧୁର ଅନୁଭବ ମିଳେ। ମାଟିରୁ ଆକାଶ ପର୍ଯ୍ୟନ୍ତ ଏହାର ବ୍ୟାପ୍ତି। ମନରୁ ହୃଦୟ ଯାଏ ପ୍ରଭାବିତ କରିବାରେ ଗୀତିକବିତା ସମର୍ଥ।

ଜନ୍ମଦାତ୍ରୀ ମା'ର କଷ୍ଟଠାରୁ କୌଣସି ଗୁଣରେ କମ୍ ନୁହେଁ ଜଣେ ସ୍ରଷ୍ଟାର ସୃଷ୍ଟିସର୍ଜନା। କେତେ ଅଭିଜ୍ଞତା, ଦୂରଦୃଷ୍ଟି ଏବଂ ସାଧନା ଫଳରେ ଜନ୍ମ ନିଏ ତା'ର ସୃଷ୍ଟି। ଗୋଟିଏ ଗୋଟିଏ ସୃଷ୍ଟିପାଇଁ କେତେ ଲୁହ ପିଇବାକୁ ପଡ଼େ ସେକଥା କେବଳ ସେହି ସ୍ରଷ୍ଟାହିଁ କହିପାରିବ। ତେଣୁ ତାକୁ କଷଟି ପଥରରେ ପରୀକ୍ଷା ନିରୀକ୍ଷା କରିବା ମଧ୍ୟ ସହଜସାଧ୍ୟ ନୁହେଁ। ସେ ଯାହା ହେଉ, କବୟତ୍ରୀ ଶ୍ରୀମତୀ ପ୍ରମିଳା ପତିଙ୍କ ଗୀତିପୁସ୍ତକ 'ଝରକା ପାଖର ଜହ୍ନ'କୁ ନିରପେକ୍ଷ ଏବଂ ଉଦାର ଦୃଷ୍ଟିରେ ବ୍ୟବଚ୍ଛେଦ କଲେ ଏହା ଯେ ଏକ ସଫଳ ସୃଷ୍ଟି, ଏ କଥା ଯେ କେହି ଅନୁଭବ କରିପାରିବ। ଲେଖିକା ଝରକା ପାଖରୁ ଜହ୍ନକୁ ଦେଖି ଆତ୍ମବିସ୍ମୃତ ହୋଇ ଭିନ୍ନ ଏକ ରାଜ୍ୟରେ ପାଦ ଦେଇଛନ୍ତି। ସେଠି ଭେଟିଛନ୍ତି ଜୀବନ ସହିତ। ଜୀବନକୁ ମଧ୍ୟ ଅତି ନିକଟରୁ ଦେଖିଛନ୍ତି, ଅନୁଧ୍ୟାନ କରିଛନ୍ତି ଏବଂ ଅନୁଭବ କରିଛନ୍ତି। ସେହି ଅନୁଭବକୁ ଅତି ନିଖୁଣ ଭାବରେ ବ୍ୟକ୍ତ କରିଛନ୍ତି ତାଙ୍କ ଗୀତିକା ଗୁଡ଼ିକରେ। ତାଙ୍କରି ଭାଷାରେ–

ଜୀବନ ହେଉଛି ବାରମାସୀ ଚଢ଼େଇ/ କେବେ ସୁଖ କେବେ ଦୁଃଖର ଭଉଁରିରେ ଦିଏ ଭସେଇ/ କେବେ ସ୍ୱପ୍ନ ଦେଖାଏ ତ କେବେ ମେଘପରି ଦିଏ କନ୍ଦେଇ।

ଜୀବନ ତ ଅଧାଲେଖା ଗଳ୍ପଟିଏ
କେବେ ସ୍ୱପ୍ନ କେବେ ବିରହ ଦିଏ
ଆଶା ଦେଇ କୁଆରରେ ଭସେଇ ନିଏ।

ସମୟର ନଈ ସୁଅରେ କାଗଜ ଡଙ୍ଗାପରି ଭାସିଯାଏ ଜୀବନ। ଜୀଇଁବାର ନିଶା ପାଖରେ ମରଣ ବି ହାର ମାନିଯାଏ। ଏହି ଭାବନାକୁ ରୂପାୟୀତ କରିବାକୁ ଯାଇ ସେ ଲେଖିଛନ୍ତି–

''ସମୟ ନଈ ସୁଅରେ
    କାଜ ଡଙ୍ଗାଟେ ପରି
ଭାସିଯାଏ ଏ ଜୀବନ
    ଭଉଁରୀରେ ଘୂରି ଘୂରି
ଜୀଇଁବାର ନିଶା ପାଖେ
    ମରଣ ବି ଯାଏ ହାରି।''

× × ×

''ଜୀବନ ନାଟକ ନୁହେଁ ସ୍ମୃତିର ଶାମୁକା ନୁହେଁ
ଜୀବନ ବି ନୁହେଁ ଏକ ବାଜି
ହାରିବାକୁ ଯିଏ ଯେତେ ଆପଣାଏ
ଜୀବନରେ ପାଏ ସବୁ କିଛି।''

× × ×

''ଜୀବନକୁ ଯେତେ ବେଶି ମୁଁ ଚିହ୍ନୁଛି
ବଂଚିବାର ମାନେ ଅବୁଝା ରହୁଛି
ଜୀବନକୁ ଯେତେ ବେଶି ମୁଁ ବୁଝୁଛି
ବୟସର ରଂଗ ଫିକା ଲାଗୁଛି।''

ଶ୍ରୀମତୀ ପତିଙ୍କର ସ୍ୱପ୍ନବିଳାସୀ ରୋମାଣ୍ଟିକ୍ ମନର ଅଭିବ୍ୟକ୍ତି ଇନ୍ଦ୍ରଧନୁର ରଙ୍ଗରେ ବିଭିନ୍ନ ଶୈଳୀରେ ଫୁଟି ଉଠିଛି। ପ୍ରେମର ସୁଖଦ ମଧୁର ଅନୁଭବକୁ ସେ ଛୁଇଁବାର ପ୍ରୟାସ କରିଛନ୍ତି। ପ୍ରୀତି ପ୍ରଣୟର କାବ୍ୟ ଚେତନାରେ ତାକୁ ପରଖି ବାଢ଼ି

ଦେଇଛନ୍ତି ପାଠକମାନଙ୍କପାଇଁ । ତାଙ୍କର ଭାଷାରେ– ବଂଚିବାପାଇଁ ଅନ୍ୟ ଏକ ଆଶ୍ରା ହେଉଛି ପ୍ରେମ । ଏଥିରେ ଅଛି ହଜିଯିବାର ନିଶା । ପୁଣି ଏଥିରେ ଅଛି ଜୀବନକୁ ଚିହ୍ନିବାର, ବୁଝିବାର ବ୍ୟାକୁଳତା । ଅନ୍ତର ଖୋଲି ନିଜକୁ ବ୍ୟକ୍ତ କରିବାର ଦ୍ୱିଧାହୀନ ସ୍ୱୀକାରୋକ୍ତି । ଅନ୍ୟ ସହିତ ଏକାକାର ହୋଇ ତଲ୍ଲୀନ ହେବାର ଦୁର୍ବାର ଉଚ୍ଛ୍ୱାସ ।

''ଏ ଗୀତ ଆଜି ଲେଖୁଛି ତୁମେ
ଗାଇବ ଦେଇ ସୁର
ଯେଉଁ ସୁରରେ ପାଇବି ଖୋଜି
ହଜିଲା ଦିନ ମୋର
ଗାଇବ ଥରେ ଏହି ଗୀତଟି
ଅନୁରୋଧ ଏ ମୋର ।''

× × ×

''କିଛି କଥା କହି ହୁଏ, କିଛି ରହିଯାଏ
ହୃଦୟରେ ଘର କରି
କିଛି ବ୍ୟଥା ସହି ହୁଏ, କିଛି ବ୍ୟଥା ବହିଯାଏ
ଆଖିର ଲୁହରେ ଝରି ।''

× × ×

''ମନେ ପଡ଼େ ଆଜି ମନେ ପଡ଼େ ଭାରି
ମୋର ସେ ପହିଲି ଲାଜ
ଜହ୍ନ ଦେଖୁ ଦେଖୁ, ଫୁଲ ଛୁଉଁ ଛୁଉଁ
ସରମି ଯିବାର ଭାବ
କା ସାଥିରେ କେବେ ମିଶିଗଲେ ଆଖି
ଲାଗୁଥିଲା ଭାରି ପାପ ।''

ଯେଉଁଠି ପ୍ରେମ ଅଛି ସେଠି ଅଛି ବିରହ । ସେଇଠି ବି ଅଛି ପ୍ରତାରଣା ଏବଂ ଯନ୍ତ୍ରଣା । ପ୍ରେମ, ବିରହ ଏବଂ ମିଳନ ନ ଥିଲେ ଜୀବନର ସ୍ୱାଦ ଅନୁଭବ କରି ହୁଏନା । କିନ୍ତୁ ପ୍ରତାରଣାର ବିଷ ପ୍ରଣୟ ଚେତନାରେ ଭରିଦିଏ କାରୁଣ୍ୟ । ଜୀବନ ହୁଏ ହା-ହାକାର ଜର୍ଜରିତ । ପ୍ରେମରେ ବ୍ୟର୍ଥତା, ହାରିଯିବାର ଅନୁଭବ ଅତ୍ୟନ୍ତ କଷ୍ଟଦାୟକ । କବି ଛଳନା ଏବଂ ପ୍ରତାରଣାର ପରିଭାଷାକୁ ବାଢ଼ି ଦେଇଛନ୍ତି ନିଜ ଭାଷାରେ ।

''ମୋ ମନକୁ ନେଇ କେତେ ଖେଳୁଛ
ତୁମେ ଯେ ଖେଳ
ଅକାରଣେ ବିତିଯାଏ ସ୍ୱପ୍ନ ଦେଖିବାର ବେଳ ।''

× × ×

''ସତେ ମୁଁ ଯେମିତି କାଠର କଣ୍ଢେଇ
ତମ ମନ ଖେଳ ଘରେ
ଯେମିତି ଗ୍ୱହିଁବ ସେମିତି ନାଚିବି
ତୁମ ଦିଆ ଇସାରାରେ
ତମେ ଭାବ ମୋର [illegible] ନୁହେଁ
ସତେ ଅବା ତୁଠ ପଥର
ମିଛ ମମତାର ଦୁନିଆଁ ଭିତରେ
ମୁଁ ଯେ ଅଲୋଡ଼ା ସହର ।''

× × ×

''ପଦିଏ କଥାରେ ଭାଙ୍ଗିଯାଏ ଯେବେ
ହୃଦୟର କାଚଘର
କୁହୁଳା ନିଆଁରେ ଜଳି ଜଳି ମରେ
ଶବଦ ଶୁଭେନା ତା'ର ।''

ଏଇ ଜୀବନରେ ସୁଖ **ଅଛି**, ଦୁଃଖ ଅଛି, ଯନ୍ତ୍ରଣା ଅଛି, ସ୍ୱପ୍ନ ଅଛି, ଆଶା ଅଛି, ନିରାଶା ମଧ ଅଛି । ଆଶା ନିରାଶାର ସ୍ୱପ୍ନକୁ ନେଇ ବଂଚିବାକୁ ଏଡ଼େଇ ଦେବା ଏତେ ସହଜ ନୁହେଁ । ଅନ୍ତର୍ଦାହ ଭିତରେ ସନ୍ତୁଳି ହୋଇ ମଧ ମଣିଷ ବଂଚିବାପାଇଁ ସଂଗ୍ରାମ କରେ । ବାରମ୍ବାର ମୃତ୍ୟୁକୁ ସାମନା କରି ମଧ ବଂଚିବାର ପ୍ରୟାସ ଜାରି ରଖେ । ନିତି ଜଳି ଜଳି ଲୁହ ପିଇ ପିଇ ବଂଚିବାର ଅଭିନୟ କରେ । ଏ ସଂପର୍କରେ କବିଙ୍କ ଭାଷା ଅତ୍ୟନ୍ତ ସ୍ପଷ୍ଟ ।

''ସ୍ୱର୍ଗ ଏଠି ନର୍କ ଏଠି ଏଇଠି ହସୁଛି ନନ୍ଦନବନ
ସୁଖ ବି ଏଠି, ଦୁଃଖ ବି ଏଠି, ଏଇଠି ଭରିଛି ପାପ ପୁଣ୍ୟ ।''

× × ×

''ଦେହ ଜଉଘର ମନ ଏକ ନଈ
ଦେହ ଜଳୁଥାଉ ପଛେ ମନ ଯାଏ ବହି ବହି
ଆଶାର ଦିହୁଡ଼ି ଜାଳି ତଥାପି ଜୀଇଁବି ମୁହିଁ ।''

×          ×          ×

''କେହି ତ ବୁଝେନା ଦୀପତଳ କେତେ
ନିବିଡ଼ ଅନ୍ଧାର ଭରା
ନିଜ ଲୁହ ନିଜେ ପିଇବାକୁ ହୁଏ
ଯାତନା ମୋର ଅସରା ।
ନିଜେ ବି ବୁଝେନା କି ସୁଖ ପାଉଛି
ଜୀବନଟା ସାରା ଜଳି
ଲିଭିବା ଆଗରୁ ଜଳୁଛି ଆଜି ମୁଁ
ବେଶି ବେଶି ଶିଖା ତୋଳି ।''

×          ×          ×

''ହରାଇଛି କେତେ ହିସାବ ରଖିନି
ପାଇଛି କେତେ ମୁଁ ହିସାବ କରେ
ହରାଇବା ଦୁଃଖ ଦେଇଛି କଷଣ
ପାଇବାର ସୁଖ ଡରାଇ ମାରେ ।''

ପ୍ରେମ, ବିରହ, ମିଳନ, ସ୍ୱପ୍ନ, ପ୍ରତାରଣା, ଜୀବନ ଯନ୍ତ୍ରଣାକୁ ନେଇ ଲେଖିକା ତାଙ୍କର 'ଝରକା ପାଖର ଜହ୍ନ' ଗୀତି ପୁସ୍ତକଟିରେ ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି । ଶବ୍ଦକୁ ନେଇ ଖେଳିବାର ସାମର୍ଥ୍ୟ କବିଙ୍କ ପାଖରେ ଅଛି । ଭାଷା, ଭାବ ଏବଂ ଶୈଳୀ ସଂପର୍କରେ ମଧ୍ୟ ତାଙ୍କର ଅପୂର୍ବ ଦକ୍ଷତା ରହିଛି । ଅନେକ ଅନୁଭୂତିକୁ ସାଉଁଟି ଆଣି କ୍ଷୁଦ୍ର ଗୀତକାଗୁଡ଼ିକରେ ସୁନ୍ଦର ମାଳାଟିଏ ଗୁନ୍ଥିଦେଇଛନ୍ତି । 'ଝରକା ପାଖର ଜହ୍ନ' ବହିଟି ନିଶ୍ଚିତଭାବରେ ପାଠକୀୟ ଆଦର ଲାଭ କରିବ ଏଥିରେ ସନ୍ଦେହ ନାହିଁ ।

**ଶ୍ରୀ ଗୌର ପଟ୍ଟନାୟକ**

# ନିଜ କଥା

ମନତଳେ ଲୁକ୍‌କାୟିତ ମୋର ବହୁଦିନର ଆଶା ଆଜି ଫଳବତୀ ହୋଇଛି । 'ଝରକା ପାଖର ଜହ୍ନ' ଆଜି ସମସ୍ତଙ୍କ ହାତରେ ଶୋଭାପାଇବ, ଏଥିପାଇଁ ମୁଁ ବହୁତ ଆନନ୍ଦିତ । ୧୯୮୯ ମସିହାରୁ ଆକାଶବାଣୀ କଟକ କେନ୍ଦ୍ରର ସ୍ୱୀକୃତିପ୍ରାପ୍ତ ଗୀତିକାର ଓ ନାଟ୍ୟକାରର ମାନ୍ୟତା ପାଇବା ପରେ, ଆକାଶବାଣୀ ଓ ଦୂରଦର୍ଶନରେ ପ୍ରଚାରିତ ଓ ପ୍ରସାରିତ ଏବଂ ଅନେକ ପତ୍ରପତ୍ରିକାରେ ପ୍ରକାଶିତ ସବୁ ଗୀତିକବିତାଗୁଡ଼ିକୁ ଏକତ୍ରିତ କରି ପାଠକମାନଙ୍କ ସମ୍ମୁଖକୁ ଆଣିବାର ଇଚ୍ଛା ଥିଲା । ଆଜି ତାହା ବାସ୍ତବରୂପ ନେଇଛି । ଲେଖାଗୁଡ଼ିକର ସଂଶୋଧନ ଓ ପୁସ୍ତକଟିର ନାମକରଣପାଇଁ ବରିଷ୍ଠ ଗୀତିକବି ଶ୍ରୀମତୀ ମୀନାକ୍ଷୀ ଦେବୀଙ୍କଠାରୁ ସହଯୋଗ ଓ ପରାମର୍ଶ ପାଇଥିବାରୁ ତାଙ୍କୁ ହୃଦୟର କୃତଜ୍ଞତା ଜଣାଉଛି । ଏହି ଗୀତିକବିତା ପୁସ୍ତକଟିର ମୁଖବନ୍ଧ ଲେଖି ମତେ ଅନୁଗୃହୀତ କରିଛନ୍ତି ଓଡ଼ିଶାର ଅଗ୍ରଗଣ୍ୟ ଗୀତିକବି, ପ୍ରାବନ୍ଧିକ ଶ୍ରୀଯୁକ୍ତ ଗୌର ପଟ୍ଟନାୟକ । ତାଙ୍କ ପାଖରେ ମୁଁ ଚିର ଋଣୀ ରହିବି । ବରିଷ୍ଠ ଗୀତିକବି ମନୋଜ ପଟ୍ଟନାୟକ ଏବଂ ଗୌରହରି ଦଳାଇଙ୍କୁ ମଧ୍ୟ ମୋର କୃତଜ୍ଞତା ଜଣାଉଛି । କାରଣ ଗୀତିକବିତା ପୁସ୍ତକଟିଏ ପ୍ରକାଶିତ କରନ୍ତୁ ବୋଲି କହି ସେମାନେ ମତେ ଉତ୍ସାହିତ କରିଛନ୍ତି । ସର୍ବୋପରି ମୋର ଶିକ୍ଷକ ବନ୍ଧୁ ତଥା ସୁଲେଖକ ଶ୍ରୀଯୁକ୍ତ ଲକ୍ଷ୍ମଣ ମଲ୍ଲିକଙ୍କ ଉତ୍ସାହ ଓ ପ୍ରେରଣା ମତେ ପୁସ୍ତକ ପ୍ରକାଶନରେ ଯଥେଷ୍ଟ ସାହାଯ୍ୟ କରିଛି । ସେ ଏଭଳି ଜଣେ ବ୍ୟକ୍ତି ଯିଏକି ନିଃସ୍ୱାର୍ଥରେ କେବଳ ମତେ ନୁହେଁ ମୋ ଭଳି ତାଙ୍କର ପରିଚିତ ସମସ୍ତ ଲେଖକ/ଲେଖିକାମାନଙ୍କୁ ବହିଟିଏ ପ୍ରକାଶନ କରି ନିଜ ପ୍ରତିଭାର ପରିଚୟ ଦିଅ ବୋଲି ସବୁବେଳେ ପରାମର୍ଶ ଦେଇଥାନ୍ତି । ବିଶେଷ କରି ଏ ପୁସ୍ତକଟିର ପ୍ରକାଶନ କ୍ଷେତ୍ରରେ ମୋର ସ୍ୱାମୀ ଓଡ଼ିଶାର ଅତ୍ୟନ୍ତ ସ୍ୱନାମଧନ୍ୟ ତଥା ଲୋକପ୍ରିୟ କଳାକାର ଶ୍ରୀଯୁକ୍ତ ରବି ମିଶ୍ରଙ୍କର ଅକୁଣ୍ଠ ପ୍ରେରଣା ଓ ସହଯୋଗ ମୁଁ ପାଇଛି । ପତ୍ନୀ ଭାବରେ ତାଙ୍କୁ ମୋର ଅଶେଷ ସମ୍ମାନ ଜଣାଉଛି ।

କର୍ମକ୍ଷେତ୍ରର ବ୍ୟସ୍ତତା, ପରିବାରର ଜଞ୍ଜାଳ, ଅସୁସ୍ଥ ଶରୀର ସବୁକିଛିର ପ୍ରତିବନ୍ଧକ ମନର ଅଦମ୍ୟ ଇଚ୍ଛାଶକ୍ତି ପାଖରେ ହାର୍ ମାନିଛି । ଆଜି ମୋ 'ଝରକା ପାଖର ଜହ୍ନ ଆପଣଙ୍କ ଘର ଭିତରେ, ହାତମୁଠାରେ ଓ ମୋ ହୃଦୟର ଅନ୍ତଃସ୍ୱରରେ ଅନୁରଣିତ ହେଉଛି । ଆପଣମାନଙ୍କର ସ୍ନେହ, ଆଦର ପାଇଲେ ଜନ୍ମଦାତ୍ରୀ ହିସାବରେ ମୋ ଜୀବନ ଧନ୍ୟ ହେବ ।

ଆଉ ଏକ ବିଶେଷ କଥା ନ କହି ରହିପାରୁନି । ସମସ୍ତେ କହନ୍ତି କବି ବା ଲେଖକଟିଏ ନିଶ୍ଚୟ ପ୍ରେମିକ ବା ପ୍ରେମିକା ହେଇଥିବ । ସେ ପ୍ରେମ ନାରୀ ପୁରୁଷର ମାନସିକ ବା ଦୈହିକ ପ୍ରେମ ନିଶ୍ଚୟ । କିନ୍ତୁ ବାସ୍ତବରେ ପ୍ରତ୍ୟେକ ମଣିଷ ଜଣେ ଜଣେ ନିଛକ ପ୍ରେମିକ । ପ୍ରେମର ସଂଜ୍ଞା କେବଳ ନାରୀ-ପୁରୁଷର ମିଳନ, ବିଚ୍ଛେଦ ବା ଜୀବନ କାହାଣୀକୁ ନେଇ ଗତିଶୀଳ ନୁହେଁ । ପ୍ରେମର ଅର୍ଥ ବ୍ୟାପକ । ସେହି ଦୃଷ୍ଟିରୁ ଆମେ ସମସ୍ତେ ପ୍ରେମିକ ପଦବାଚ୍ୟ । ଅନେକ ପାଠକ-ପାଠିକା, ମୋର ବନ୍ଧୁ ଓ ଆତ୍ମୀୟମାନେ ମୋ ଲେଖାପଢ଼ି ମନ୍ତବ୍ୟ ଦେଇଥାଆନ୍ତି ଯେ, ମୋ ଲେଖାଗୁଡ଼ିକ ପ୍ରାୟ ଅଧିକାଂଶ କରୁଣ, ବିରହ, ବିଚ୍ଛେଦ ଓ ଯନ୍ତ୍ରଣା ଉପରେ ପର୍ଯ୍ୟବସିତ । ଏହାର ଅର୍ଥ ନୁହେଁ ଯେ ମୋ ଜୀବନରେ କେବଳ ତାହା ହିଁ ଘଟିଛି । ଜଣେ କବି ବା ଲେଖକ ତା' ନିଜ ଜୀବନର ଅନୁଭୂତି ସହିତ ତା'ର ପାରିପାର୍ଶ୍ୱିକ ଘଟଣାପ୍ରବାହ, ସମଗ୍ର ବିଶ୍ୱରେ ସଂଘଟିତ ଘଟଣାବଳୀକୁ ନେଇ ମାନସିକ ସ୍ତରରେ ରୂପ ଦେଉ ଦେଉ ତା'ର ଆକାରପ୍ରକାର କେତେବେଳେ କ'ଣ ପାଲଟେ ତାହା ଲେଖକ/କବିର ଚିନ୍ତାର ବହିର୍ଭୂତ । ଏହାହିଁ ବୋଧହୁଏ ମୋ ଲେଖାରେ କରୁଣତାର ସ୍ପର୍ଶ ଦେଇଛି ।

ଶେଷରେ ଏ ଦୁନିଆର ଶ୍ରେଷ୍ଠ କଳାକାର, ଗୀତିକାର ଓ ନାଟ୍ୟକାର ବିଶ୍ୱନିୟନ୍ତା ଜଗନ୍ନାଥଙ୍କ ପାଦତଳେ ମୋ ହୃଦୟର ସକଳ ଭାବନା, କାମନା ସବୁକିଛି ଅର୍ପିତ କରି ତାଙ୍କ ନିର୍ଦ୍ଦେଶକୁ ପାଳନ କରିବାର ଶକ୍ତି ଓ ସାହସ ଦିଅନ୍ତୁ ବୋଲି ଆଶିଷ ଭିକ୍ଷା କରି ଶତକୋଟି ପ୍ରଣାମ ଜଣାଉଛି ।

କଟକ
ଗଣେଶ ଚତୁର୍ଥୀ

ପ୍ରମିଳା ପତ

## ଉତ୍ସର୍ଗ

ମୋର ଗୀତ, ଗଳ୍ପ ଓ କବିତା ପଢ଼ି ଯେଉଁମାନେ ପସନ୍ଦ କରିଛନ୍ତି, ପ୍ରଶଂସାପତ୍ରଟିଏ ଲେଖି ମତେ ଆଗକୁ ଯିବାର ପ୍ରେରଣା ଓ ଉତ୍ସାହ ଦେଇଛନ୍ତି, ସେଇ ଅଗଣିତ ଓଡ଼ିଆପ୍ରେମୀ ପାଠକ-ପାଠିକା, ବନ୍ଧୁ ଓ ଶୁଭେଚ୍ଛୁମାନଙ୍କ **'ଝରକା ପାଖର ଜହ୍ନ'** ବହିଟିକୁ ସମର୍ପିତ କରୁଛି... ।

ଆପଣମାନଙ୍କର ଗୁଣମୁଗ୍ଧ

**ପ୍ରମିଳା ପତି**

# ଏଥିରେ ଅଛି

## (୧)

ବୟସ...ବୟସ...ବୟସ...ଏଇ ବୟସ
ତାକୁ ଧରି ଯେ ରଖିବ କିଏ
ଚିତିରିମିତିରି ପରଜାପତି ସେ...
ସେ'ତ ଫୁର୍‌କିନା ଉଡ଼ିଯାଏ...
ଫୁର୍‌କିନା ଉଡ଼ିଯାଏ...। ।୦।

ଜହ୍ନମାମୁ ସାଥେ...ଖେଳିବାକୁ କେତେ
ଅଝଟିଆ ହେଉଥାଏ
ବାଲିଘର ତୋଳି... ରାଜାରାଣୀ ସାଜି
ମିଛରେ ଘର ବସାଏ
ମନ ପକ୍ଷୀରାଜେ... ଏଡି ଯେତେ ବାଧା
ସାତସାଗରକୁ ଡେଇଁଯାଏ...। ।୧।

ମନ ଦିଆନିଆ ଖେଳ ଖେଳି ବସେ
ଆପଣା ପରକୁ ଭୁଲେ...
ମିଳନର ଗୀତି ଲେଖିବ ସେ କେବେ
ବିରହ ନିଆଁରେ ଜଳେ
ବଞ୍ଚିବାର ମାନେ ବୁଝିଗଲା ପରେ
ସେତ ରାମ ନାମ ଜପୁଥାଏ...। ।୨।

•

## (୨)

ଜୀବନ...ଏଇ ଜୀବନ
ଜୀବନ ତ ଗୋଟେ ବାରମାସୀ ଚଢ଼େଇ
ସୁଖର-ସାଗରରେ ଖେଳୁଥାଏ ଦୋଳି
କେବେ ପୁଣି ଦିଏ ଦୁଃଖ
ଭଉଁରୀରେ ଭସେଇ...। ।୦।

ଲୁଚକାଳି ଖେଳେ ମନ ସାଥେ
ଭାଗ୍ୟର-ଡୋରି ଧରି ହାତେ
ମନସାଥେ ମନ ଯୋଡ଼େ
ସପନର ନୀଡ଼ ଗଢ଼େ
ପୁଣି କେବେ ସେ ନୀଡ଼କୁ
ଝଡ଼ ନିଏ ଉଡ଼େଇ...। ।୧।

ଦେଖାଏ ସେ କେତେ ନୂଆ ସପ୍ନ
ହାତ ପାଆନ୍ତାରେ ଲାଗେ... ଜହ୍ନ
ମନ-ପକ୍ଷୀରାଜ ଚଢ଼ି
ଝୁମି ଝୁମି ଯାଏ ଉଡ଼ି
ଦିଏ କେବେ ଖିଆଲରେ
ମେଘଭଳି କନ୍ଦେଇ...। ।୨।



## (୩)

ଲିଭିବା ଆଗରୁ...ଜଳୁଛି ଆଜି ମୁଁ
ବେଶି ବେଶି ଶିଖାଟେକି
ଯେ ମତେ ଦେଖୁଛି... ସେ ଖାଲି ଭାବୁଛି
(ମୁଁ) ନିଆଁରେ ଖେଳୁଛି ହୋଲି...। ।୦।

ଜୀବନଟା ସାରା ଦହନ ସହିଛି
ଦେବାକୁ ଟିକେ ଆଲୋକ
ସେ ଆଲୋକ ପାଇ...ସଭିଏଁ ହସନ୍ତି
ସହେ ମୁଁ ଦୁଃଖ ଅନେକ
କହିନି କା ପାଖେ...
ଅଭିଯୋଗ କେବେ
ଏତେ, ସହୁଛି ଦହନ ବୋଲି...। ।୧।

କେହି ତ ବୁଝେନା...ଦୀପତଳ କେତେ
ନିବିଡ଼ ଅନ୍ଧାରେ ଭରା
ନିଜ ଲୁହ ନିଜେ ପିଇବାକୁ ହୁଏ
ଯାତନା ମୋର ଅସରା
ନିଜେ ବି ବୁଝେନା...
କି ସୁଖ ପାଉଛି
ମୁଁ ଜୀବନଟା ସାରା ଜଳି...। ।୨।

•

## (୪)

କଥାରେ ବି ଜଳିଯାଏ...ସମ୍ପର୍କର ଜୁଇ
କଥାରେ ବି ହସିଉଠେ...ମନ-ମରୁଭୂଇଁ...। ।୦।

ଭାରି ଇଚ୍ଛା ହୁଏ...ଲଙ୍ଘି ଯିବାପାଇଁ
ସାତ ସିନ୍ଧୁ ତେର ନଈ
ଦୁନିଆଁର ଯେତେ ବନ୍ଧନ ଏଡ଼ାଇ
ଲକ୍ଷ୍ମଣ ରେଖାକୁ ଡେଇଁ
ମନହୁଏ ନିଜ
ଇଚ୍ଛାରେ ଚାଲିବାପାଇଁ...। ।୧।

ସଂସାର-ପଞ୍ଜୁରି-ମାୟା କାଟି କାଟି
ଡେଣାଝାଡ଼ି ଆକାଶରେ
ମୁଁ ଉଡୁଥିବି...ରଙ୍ଗବେରଙ୍ଗ
ଗୁଡ଼ିଙ୍କର ଇଶାରାରେ
ହୀରା-ନୀଳା-ମୋତି-ମାଣିକ ଯାଚିଲେ
କରିବି ମୁଁ ନାହିଁ ନାହିଁ
ମନହୁଏ ନିଜ
ଇଚ୍ଛାରେ ଉଡ଼ିବି ମୁହିଁ...। ।୨।



## (୫)

ଜହ୍ନରେ ଜହ୍ନ ତୁ ଏଡ଼େ ସୁନ୍ଦର
ତୋ ପରି କେ ହେବ କହ
ସବୁରି ମନରେ ତୋହରି ଘର
ତୋ ପରି କେ ହେବ କହ...। ।୦।

ମାଆ କୋଳେ ଶିଶୁ...ଡାକେ ମାମୁ ମାମୁ
ସରଗୁ ଓହ୍ଲେଇ ଆ'ତୁ...
ସରଗୁ ଓହ୍ଲେଇ ଆ...
ଦୁଧ ଭାତ ଖାଇ...ମୋ' ସାଥିରେ ତୁହି
ଆମ ଘରେ ରହି ଯା' ତୁ...
ଆମ ଘରେ ରହିଯା...
ଏକା ଏକା ରହି ନୀଳ ଆକାଶେ
ଛାଡ଼ି ନ ପାରୁଛୁ ମୋହ...। ।୧।

କୁମାରୀ ମନର... ଏକଇ କାମନା
ତୋ ପରି ସାଥିଟେ ପାଇଁ...
ତୋ ପରି ସାଥିଟେ ପାଇଁ
କବି କବିତାରେ...ତୋ ରୂପ ଉପମା
ତୁଳନା ଯାହାର ନାହିଁ...ତୁଳନା ଯାହାର ନାହିଁ
ଥିଲେ ଯେତେ ଦୂରେ ମୁଁ ତତେ ଝୁରେ
(ତତେ) ଭୁଲିକେ ପାରିବ କହ...। ।୨।



(୬)

ଝରା ପତର ମୁଁ...
ଝରି ଝରି ଯାଏ
ନାହିଁ କିଛି ମୋର ଠିକଣା
ମାଟିର କୋଳରେ...
ପଡ଼ିବି ମୁଁ ଶୋଇ
ଅବା ଯିବି ଦୂରେ ଜାଣେନା...। ।୦।

ହସୁଥିଲି ଦିନେ...
ଶାଖାରେ ଶାଖାରେ
କେତେ ସପନକୁ ବାନ୍ଧି
ଥିଲେ କେତେ ମୋର...
ଅତି ଆପଣାର
ମନରେ ମନକୁ ଛନ୍ଦି...
ଅତୀତ ମୁଁ ଆଜି ପାଲଟି ଯାଇଛି
କେହି ମତେ ଥରେ ଖୋଜେନା...। ।୧।

ସୁଖ ଆସିଥିଲା...
ସୁନା ସବାରିରେ
ଆଖିରେ କୁହୁକ ଭରି
ସେ ଆଖିରେ ଆଜି
ଶ୍ରାବଣ ଝରୁଛି
ସୁଖ ଗଲାପରେ ଫେରି
ଏଇ ତ ଜୀବନ...ଜାଣେ ଏଇ ମନ
ସବୁ ବୁଝି କିଛି ବୁଝେନା...। ।୨।

●

## (୭)

ଚନ୍ଦ୍ରମା ଗୋ ଚନ୍ଦ୍ରମା
ମୋ ଝରକା ପାଶେ ହସନା
ମୁଁ ଏକ ବାସି ଝରାଫୁଲଟିଏ
ଝରିଯାଇଛି ମୋ ବାସନା । ।୦।

କେତେ ଚନ୍ଦିନୀ ରାତିରେ ଝୁମିଛି
ଆଖିରେ ସପନ ସଜେଇ
କେତେ ଯେ ଜୋଛନା ଜୁଆରେ ଭିଜିଛି
ରାତ୍ରିର ବୁକୁ ସଜେଇ
ବାସିଫୁଲ ବୋଲି...
ଅଲୋଡ଼ା, ଅଖୋଜା
କେହି ତ ମତେ ଲୋଡ଼େନା... । ।୧।

ପାଗଳ ହୋଇଛି...ଅଳି ପ୍ରୀତିଭୋଳେ
ମୋ ରୂପ ମୋ ରଙ୍ଗ ନିଶାରେ
କେତେ ଯେ ରଜନୀ ତନ୍ଦ୍ରାହୀନ ହୋଇ
ସାଇତିଛି ବାସ ବୁକୁରେ
ବଇଶାଖି ଆଜି
ଜାଳିଦିଏ ମତେ
କେହି ତ ବୁଝେନା ବେଦନା... । ।୨।



## (୮)

ମୋ ଆଖିରୁ ନିଦ ହଜେ
ଅବୁଝା ଏ ମନ ଖୋଜେ
ଆଶାଭରା ସ୍ୱପ୍ନଟିଏ
ଆଜି ଏ ନିରୋଳା ସଞ୍ଜେ । ।୦।

ସୁଖର ସଉଦା କରି
ଦୁଃଖରେ ନଉକା ଭରି
ସ୍ୱପ୍ନର-ସୌଦାଗର
ନିରାଶା ଢେଉରେ ଖେଳି
ପାଇ ପୁଣି ହରାଇ ସେ
ବିରହୀ ମଣିଷ ସାଜେ...। ।୧।

ଝରିଗଲା ବସନ୍ତର
ଅଫେରା ସ୍ୱପ୍ନକୁ ଖୋଜି
ନିରାଶାରେ ଯାଏ ଶୋଇ
କ୍ଳାନ୍ତ ଦୁଇ ଆଖି ବୁଜି
ଫୁଲଭରା ଜହ୍ନଝରା
ରାତ୍ରିର କଣ୍ଟକ ଶେଯେ। ।୨।



## (୯)

ଗୀତଟିଏ ଲେଖିଲେ ମୁଁ...
ତୋ' କଥା ମନେପଡ଼େ
ଗପଟିଏ ଲେଖିଲେ ମୁଁ...
ତୋ' କଥା ମନେପଡ଼େ
ଆଖି ବୁଜିଲେ ତୁ...ଆଖି ଖୋଲିଲେ ତୁ
ତୋ' ରୂପ ଦିଶିଯାଏ...
ଛବି ଭଳି ମୋ' ଆଖିରେ...। ।୦।

କେତେବେଳେ ଝରିଯାଉ
ମୋ' ଆଖିର ଲୁହ ହୋଇ
ହସ ହୋଇ ଝରୁ ପୁଣି
ମୋ' ଓଠର କୂଳଛୁଇଁ
ତୋ' ମୁହଁ ଦିଶିଯାଏ...
ମୋ ମନର ଆଇନାରେ...। ।୧।

ଫୁଲରେ ଫୁଲରେ ଦେଖେ
ତୋ' ରୂପର ଚମକ
ଅମାନିଆ ବରଷାରେ...
ତୋ' ପ୍ରେମର ମହକ
ନ ଗ୍ଧହିଁ ବି ଭାବୁଥାଏ...
ତୋ କଥା ସବୁବେଳେ...। ।୨।



## (୧୦)

ଚାଲିବାକୁ ଥିଲା ଅନେକ ବାଟ
ଚାଲୁ ଚାଲୁ ବାଟ ଭୁଲିଲି
କିଏ ସେ ଅଜଣା-ଅଚିହ୍ନା ପଥିକ
ହାତଧରି ମତେ ବାଟ କଢ଼େଇଲା
ନୂଆ ବାଟେ ପୁଣି ଚାଲିଲି...। ।୦।

ଦୀପଟିଏ ହୋଇ ଅଗଣାରେ ତା'ର
ଜଳିବାକୁ ପଣ କରି
ସାରା ଜୀବନକୁ ବାଜିରଖି ମୁଁ ଯେ
ଜଳି ଜଳି ଜଳିଗଲି
ଦହନ ସହିଲି...ଯାତନା ସହିଲି...
ସିଏ ତ ଚାହିଁନି ଫେରି। ।୧।

ଭରସା ନ କରି, ହୃଦୟ ନ ହାରି
ଯଦି ଏକା ଚାଲିଥାନ୍ତି
ଆଜି ପୁଣି କିଆଁ ମଝି ବାଟଟାରେ
ମିଛେ ଠିଆ ହୋଇଥାନ୍ତି
କି ଲାଭ ପାଇଲି, ବିଶ୍ୱାସ ମୁଁ କଲି...
ଜୀବନଟା ସାରା ଝୁରିଲି। ।୨।

•

## (୧୧)

ସିନ୍ଦୂର ଟୋପାଏ
ମଥାରେ ଦେଇ ମୋ'
କରିନେଲ ଏତେ ନିଜର
ଲାଗିଲା ଅଚିହ୍ନା
ଥିଲା ଯେ ଆପଣା
ତମେ ଲାଗ ସାଥୀ ଏକା ନିଜର...। ।୦।

ଜୀବନର ମାନେ ବଦଳି ଯେ ଗଲା
ବୁକୁରେ ସାଇତି ତୁମରି ଛବି
ନିଜ ପାଶେ ନିଜ ପରିଚୟ ହଜେ
ସତେକି ସପନ ପାରେନି ଭାବି
ତୁମରି ପ୍ରେମରେ
ଧୋଇଯାଏ ସାଥୀ
ଯେତେ ସବୁ ପାପ ଏ ଜୀବନର...। ।୧।

ତୁମେ ଥିଲେ ଦୂରେ ଡରାଏ ମୋ ମନ
ମନେ ଖେଳେ ମିଛ ଭାବନା କେତେ
ତୁମରି ଦେହର ଛାଇଟିଏ ହୋଇ
ସାତ ଜନ୍ମେ ସାଥୀ ହୁଅନ୍ତି ସତେ
ତୁମରି ମନର ଚଉରା ମୂଳରେ
ଦୀପଟେ ହେବାକୁ
କାମନା ମୋର...। ।୨।



## (୧୨)

ତମେ ଦିନେ କହିଥିଲ...ଦେଖା ହେବ ତମ ସାଥେ
ବିତିଯାଉ ଦିନ, ମାସ,
ଓ ବରଷ,ଯୁଗ କେତେ...। ।୦।

ଯୁଗ ତ ଯାଇଛି ବିତି
ତାରିଖକୁ ଗଣି ଗଣି
ନୂଆ ଯେ ପୁରୁଣା ହୁଏ...ବୟସକୁ ଚିହ୍ନିଚିହ୍ନି
ହସ ଲାଗେ ଆଜି ସତେ
କେବେ ଯଦି ଦେଖା ହୁଏ
ତମର ସେ ଦୁଇଆଖି
ଚିହ୍ନିକି ପାରିବ ମତେ...। ।୧।

ସ୍ମୃତିର ପାହାଡ଼ଟିଏ
ପାଲଟି ମୁଁ ଯାଇଛି
ମୋ' ମନର ଥୁଣ୍ଟାଗଛେ...ମଳୟ ବି ବହୁଛି
ଦେଖିବି ଦେଖିବି ବୋଲି
ତମର ଦରଦୀ ମୁହଁ
ସମୟକୁ ହାତଯୋଡ଼ି
ନେହୁରା ହେଉଛି କେତେ...। ।୨।



## (୧୩)

ଗଳ୍ପଟିଏ ନୁହେଁ ମୁଁ... ସ୍ୱପ୍ନଟିଏ ନୁହେଁ
ପ୍ରିୟତମା ପୃଥିବୀ ଗୋ...ମତେ ଭୁଲ୍ ବୁଝ ନାହିଁ
ମୁଁ ଯେ ମଉସୁମୀଟିଏ...। ।୦।

ତୁମ ରୂପ, ତୁମ ଋଷା...କରେ ମତେ ପାଗଳ
ଦୂରେଇ ଦେଉଛ ଯେତେ
ଲାଗ ସେତେ ନିଜର
ପ୍ରିୟା ମୋର ମୁଁ ତୁମର ଚିରଦିନ ସାଥୀ
ଦୂରେ ସିନା ଯାଏ ଚ଼ାଲି ମନଝୁରେ ସ୍ମୃତି
ତୁମ ରେଶମୀ ପଣତେ
ଶୋଇ ଯାଆନ୍ତି କି ନିଦେ
ମନ ମୋର କେତେ ଝୁରି ହୁଏ...। ।୧।

ମୁଁ ଜାଣିଛି ତମ ଋଷା...ଖାଲି ଏକ ଛଳନା
ତୁମ ମନେ ବସନ୍ତର କି ଅଧିର ମୂର୍ଚ୍ଛନା
ତୁମ ବିନା ମୁଁ ଯେମିତି
ନାମ ହୀନ ଫଗୁଣ
ମୋ' ବିରହେ ପୃଥିବୀ ଗୋ...ତମେ ମରୁ ନିର୍ଜନ
କଥା କୁହ ପ୍ରିୟା ମୋର
ତୁମ ତନୁ-ବନେ ଏତେ
ମଧୁରତା କିଏ ଭରିଦିଏ...। ।୨।



## (୧୪)

ଫେରିଯାଅ ଫଗୁଣ ଗୋ...
        ବସନ୍ତ ମୁଁ ଗ୍ଭହେଁ ନାହିଁ
ପାଇ ପୁଣି ହରାଇବା
        ଦୁଃଖ ସହି ହୁଏ ନାହିଁ...। ।୦।

ତମେ ତ ଆସ ଏମିତି...ବରଷକୁ ବରଷ
ନୂଆ କେତେ ସ୍ୱପ୍ନ ଦେଇ... କରିଦିଅ ସରସ
ଭାଙ୍ଗିଗଲେ ନିଦ ତମେ
        ଲୁଚିଯାଅ କୁହ କାହିଁ
ତନୁ ବନେ ଅବଶତା...
        ଶୀରିହୀନା ହୁଏ ମୁହିଁ...। ।୧।

ଦୁଇଦିନ ଦେଖା ତୁମ... ଗଳ୍ପପରି ଲାଗେ
ବଇଶାଖି ଜଳନରେ...ପାଉଁଶ ମୁଁ ସାଜେ
ରଙ୍ଗ ଫିକା ପଡ଼େ ମୋର
        ବୟସ ଯେ ଆସେ ନଇଁ
ଝରାପତରକୁ ଗଣି...
        ସମୟକୁ ଗ୍ଭହିଁ ଗ୍ଭହିଁ...। ।୨।



## (୧୫)

ଜୀବନକୁ ଯେତେ...ବେଶି ମୁଁ ଚିହ୍ନୁଛି
ବଞ୍ଚିବାର ମାନେ ଅବୁଝା ରହୁଛି
ଜୀବନକୁ ଯେତେ...ବେଶି ମୁଁ ବୁଝୁଛି
ବୟସର ରଙ୍ଗ ଫିକା ଲାଗୁଛି...। ।୦।

କାଗଜଫୁଲର ରଙ୍ଗ ଭଳି ସିନା...
ଏଇ ହସ...ଏଇ ନିଶା...ଏଇ ଅମାନିଆ ମନ
ଆଜି ଅଛି...କାଲି ନାଇଁ...ଏଇ ସ୍ନେହ...
ଏଇ ପ୍ରେମ...ଆଉ ଅଝଟିଆ ସ୍ୱପ୍ନ
କୁହୁକ ରାଇଜ କାହାଣୀଟି ପରି
ଜୀବନର ସବୁ ସତ ଲାଗୁଛି। ।୧।

କେତେ ଅଭିନୟ...କରିବାକୁ ହୁଏ
ଏ ନାଟକ...ଏ ସପନ ସବୁ ସତ ହେବାପାଇଁ
କେତେ ନୂଆ ରଙ୍ଗ... ବୋଳିବାକୁ ହୁଏ
ଏ ମଣିଷ...ଏ ଦୁନିଆଁକୁ...
ସୁଖ ଯେତେ ଦେବାପାଇଁ
ନିଜ ଲୁହ ନିଜେ ପିଇ କହେ ମୁଁ ଯେ
ଦେଖ ଏଇ ମୁଁ କେମିତି ହସୁଛି...। ।୨।



## (୧୬)

ଆକାଶରେ ଜହ୍ନ...
ଜହ୍ନରେ ଜୋଛନା...
ଜୋଛନାରେ ଭରା ତାତି
ଅକାରଣେ ବିତେ
ଏ ମଧୁ ଯାମିନୀ...
ତମେ ପାଶେ ନାହଁ ସାଥୀ...। ।୦।

ଭସା ଭସା ଏଇ ରାତିର ଆଖିରେ
ଜଳୁଛି ତାରାର-ଦୀପ
ନଈ ଆରପାରେ ଚକୋରୀ ଅଧରେ
ଗାଉଛି ବିରହ ଗୀତ
ସେ ଗୀତର ସୁର ଉଦାସୀ ମନରେ
ଭରେ ଯେ ବେଦନା ସାଥୀ...। ।୧।

ବାଉଳା ମନରେ ମିଠା ମିଠା କେତେ
ସପନର ଜାଲବୁଣେ
ମନର-ଝରକା ଆପେ ଖୋଲିଯାଏ
ନିଦ ହଜେ ଅକାରଣେ
ମୁଁ ଜାଣିଛି ତମେ ଆସିବ ନି ଫେରି
ତଥାପି ଝୁରଇ ସାଥୀ...। ।୨।



## (୧୭)

ଜହ୍ନ ଯେବେ ଝରିଯାଏ...ଫୁଲର ଓଠରେ
ରାତି ଯେବେ ଶୋଇପଡ଼େ...ଆକାଶ ଛାତିରେ
ମୋ ନିଦଟା ଭାଙ୍ଗିଯାଏ ଫଗୁଣର...
ମିଠା ମିଠା ମଳୟ ଛୁଆଁରେ...। ।୦।

ପହିଲି ଏ ବସନ୍ତର...ରଙ୍ଗ ଭରା ନୂଆ ନିଶା
ଅଭିମାନୀ ବଉଳର...ଚୁପି ଚୁପି କଥାଭାଷା
ଅଜାଣତେ ମନ ମୋର ଭିଜିଯାଏ
ମୁଠା ମୁଠା ଲାଜର ଅବିରେ...। ।୧।

ଅଳସୀ ମୋ ମନଖୋଜେ...ଫୁଲଝରା ମଧୁ ରାତି
ବୁକୁତଳେ ଭରିଯାଏ... କେତେଯେ ଅବୁଝା ତାତି
ଅଜାଣତେ ତନୁ ମୋର ଭିଜିଯାଏ
ମୁଠା ମୁଠା ଅକୁହା ନିଶାରେ...। ।୨।

ପରଜାପତିଟା ଯେବେ ଫୁଲବନେ ଅନୁରାଗେ
ପ୍ରୀତିର ଅବିର ବୋଳେ ଚଇତାଳି ବହେ ଯେବେ
ଜାଣେନା କାହିଁକି ମନ ଖୋଜେ ମୋର
ମନଲାଖି ସାଥୀର ପ୍ରୀତିରେ। ।୩।



## (୧୮)

ଶୀତ ପାହାନ୍ତିର ଶିଶିର ଶେଯରେ
ମୁଁ ଯେ ସ୍ୱପ୍ନମୟୀ କଳିକା
ନିଦ ମୋ ଭାଙ୍ଗନା...ମତେ ଜଗାଅନା
ମୁଁ ଯେ ବିରହିଣୀ ନାୟିକା...। ।୦।

ଜହ୍ନଗୋ... ଧୀରେ...ବୋଳିଦିଅ ମୋ ତନୁରେ
ଶୀତଳ...ଜୋଛନା ପୀୟୂଷ
ରାତ୍ରି ଗୋ...ତୁମେ ପୋଛିଦେଇ ଲୁହ ମୋର
ଭରିଦିଅ ମିଠା-ଅଳସ
ଅଭିମାନୀ ବର୍ଷା ଆକାଶୁ ଝରନା
ମୁଁ ଯେ ପକ୍ଷହୀନା ବଳାକା...। ।୧।

ଆଙ୍କି ଦିଅ ସୂର୍ଯ୍ୟ ଗୋ ମୋ କପାଳେ ଥରଟିଏ
ଲାଜର-ସିନ୍ଦୂର ବିନ୍ଦୁ
ଫୁଲ ଗୋ ମୋ ଗଭାରେ ବାସ ଭରି ଦେଇଯାଅ
ସାଜିବି ମୁଁ ନବବଧୂ
ସପନ ଗୋ ଧୀରେ ଆସ ନୟନରେ
ମୁଁ ଯେ ଏକାକିନୀ ତାରକା। ।୨।



# (୧୯)

ଜହ୍ନକୁ ମୁଁ ଛୁଇଁ ଛୁଇଁ
ଯାହେଁ ଉଡ଼ିଯିବା ପାଇଁ
ନୀଳ ଆକାଶଠୁ ଦୂରେ...
ବହୁଦୂରେ...

କାହା ମନ-ପଞ୍ଜୁରୀରେ
ଦେବିନାହିଁ କେବେ ଧରା
ଜୀଇବି ମୁଁ...ମୋ' ଇଛାରେ...
ମୋ ଇଛାରେ...। ।୦।

ଡାକ ନାହିଁ ଇଶାରାରେ...
ମତେ ଗୋ ନୀଳସାଗର... ବୁଝେନା ମୁଁ ତମକଥା
ତମ ଇଛା ହେଲେ ତମେ... କୂଆରେ ଭସେଇଦିଅ
ବୁଝନା ଦରଦ ବ୍ୟଥା
ଦୂରକୁ ସୁନ୍ଦର ଦିଶ...ମିଛେ ମିଛେ ପାଶେ ଆସ
ଯାଲିଯାଅ ପୁଣି ଦୂରେ...ବହୁଦୂରେ...। ।୧।

ମାୟାବିନୀ ବନାନୀଗୋ...ଦିଗହଜା କର ନାହିଁ
ସବୁଜ ମାୟାରେ ମୋତେ...
ବୁଝିଛି ମୁଁ ତୁମ ମାୟା...କାୟାହୀନ ତୁମ ଛାୟା
ପ୍ରତାରଣା କରେ ସତେ
ଦୂରକୁ ସୁନ୍ଦର ଦିଶେ...ମିଛ କାଉଁରୀ ପରଶେ
ଯାଲିଯାଏ ପୁଣି ଦୂରେ...ବହୁଦୂରେ...। ।୨।



## (୨୦)

ଫୁଲ ସବାରିରେ...ନେଇ ଯା’ ମତେରେ
ପାଶେ ପାଶେ ତୋର ରହିବି
(ତୋ) ଘର ଅଗଣାରେ...ତୁଳସୀ ମୂଳରେ
ଦୀପଟିଏ ହୋଇ ଜଳିବି...। ।୦।

ଧନ ମୁଁ ଋହେଁ ନା...ସମ୍ପଦ ଋହେଁ ନା
ଋହେଁ ନା ମୁଁ ରାଜଉଆସ
ତୋ’ କୁଡ଼ିଆଘର ମୋପାଇଁ ସରଗ
ପାଇ ତୋର ପ୍ରୀତି ପରଶ
ତୋପାଇଁ କି ମୁଁ
ଜହ୍ନଟିଏ ହୋଇ
ଜୋଛନାର ଧାରା ଢାଳିବି...। ।୧।

ଫୁଲରେ ଫୁଲରେ ସାଜିଦେବି ଘର
ପରଜାପତି ତୁ ହୋଇ
ଚୁମି ଯାଉଥିବୁ ଫୁଲର ଓଠକୁ
ମଧୁଭରା ମନନେଇ
ତୋ’ପାଇଁ କି ମୁଁ
ଫୁଲଟିଏ ହୋଇ
ତୋ’ ଅଗଣାରେ ହସିବି...। ।୨।



## (୨୧)

ଛମ୍ ଛମ୍ ଛମ୍ ଛମ୍
ଛମ୍ ଛମ୍ ବାଜେ ମୋ ପାଦର ପାଉଁଜି
ଜାଣେ ନା କିଏ ମତେ
କିମିଆଁ କରଚି ଆଜି... । ।୦।

ମୁଁ ଥିଲି ଏକୁଟିଆ...ଉଡ଼ାଚଢ଼େଇ
କିଏ ମତେ ବନ୍ଦୀ କଲା...ବସାଟେ ଦେଇ
ମନ ମୋର ଥିଲା ଏକ...ଅବୁଝା ନଈ
କିଏ ବନ୍ଧ ବାନ୍ଧିଦେଲା...ଆପଣା ହୋଇ
ମୁଁ ପାରୁନି ବୁଝି...ହାଏ ପାରୁନି ବୁଝି
କିଏ କାଉଁରୀ କାଠିରେ
ମତେ ଛୁଇଁଚି ଆଜି... ।୧।

ନିରୋଳା ରାତିରେ ଥିଲି...ଏକାକୀ ଜହ୍ନ
ଆଖିରେ ନ ଥିଲା ସତେ...କିଛି ସପନ
କିଏ ଶିଖେଇଲା ମତେ...ସପନ ଦେଖା
ସପନ ନୁହେଁ ସେ... ମିଛ ମରୀଚିକା
ମୁଁ ପାରୁନି ବୁଝି... ହାଏ ପାରୁନି ବୁଝି
ହସ ଚୋରେଇ କିଏ
ଏତେ ଲୁହ ଦେଲା ଆଜି... । ।୨।



## (୨୨)

ତୁ ଥିଲେ ମୁଁ ଅଛି
        ମୁଁ ଥିଲେ ତୁ
ମୋ ପାଇଁ ତୁ ଆଉ
                    ତୋ ପାଇଁ ମୁଁ...।    ।୦।

ଯେମିତି ଜହ୍ନପାଇଁ...କଇଁ ଆକୁଳ
ଯେମିତି ସୂର୍ଯ୍ୟପାଇଁ...ଝୁରେ କମଳ
        ଯେମିତି ରାତି ଖୋଜେ...ନିଦୁଆ ମନ
        ଯେମିତି ନିଦ ଖୋଜେ...ମିଠାସପନ
ତୁ ହସିଲେ ମୁଁ ହସିବି...
                    ମୁଁ ହସିଲେ ତୁ...।    ।୧।

ଯେମିତି ବରଷା ବିନା...ନାହିଁ ଶ୍ରାବଣ
ଯେମିତି ଫୁଲ ବିନା...ଫିକା ଫଗୁଣ
        ଯେମିତି ଚକୁଆ ଝୁରେ...ଚକୋର ପାଇଁ
        ଯେମିତି ସ୍ୱର ବିନା...ଗୀତଟେ ନାହିଁ
ମୁଁ ରଷିଲେ ତୁ ରଷିବୁ...
                    ତୁ ରଷିଲେ ମୁଁ...।    ।୨।



## (୨୩)

ମୋ ଗାଆଁରେ ଝରଣା ଝରେ
ତୋ ଗାଆଁରେ ନଈ
ମୋ ଗାଆଁରେ କଦମ୍ବ ଫୁଟେ
ତୋ ଗାଆଁରେ କଇଁ
ଦେଇଛି ତୋ ନାଆଁ...ଲାଜେଇ ଚନ୍ଦ୍ରମା
ସେଇଥିପାଇଁ, ହଁ ସେଇଥିପାଇଁ... । ।୦।

ମୋ ଗାଆଁରେ ପବନ ଯେବେ
ବହୁଛି ଥିରି ଥିରି
ତୋ ପାଦର ପାଉଁଜି ବାଜେ
ପବନ ସୁରେ ଥରି
ମୁଁ ଡାକିଲେ ଶାରିକୁ ମୋର...ତୋ ମଇନା ହସେ
ମୁଁ ରୁଷିଲେ ମିଛିମିଛିକା...ତୋ ମନ ରୁଷି ବସେ
ଦେଇଛି ତୋ ନାଆଁ...ମନୋଇଁ ପ୍ରିୟା...
ସେଇଥିପାଇଁ ହଁ ସେଇଥିପାଇଁ... । ।୧।

ମୋ ଗାଆଁରେ ବରଷା ଯେବେ...ବିଜୁଳି ସାଥେ ନାଚେ
ତୋ ମନର ମୟୂରୀ କିଆଁ...ଅଭିସାରିକା ସାଜେ
ମୁଁ ଗାଇଲେ ଗୀତଟେ କେବେ
ତୋ' ବୀଣା ତାର ଝୁମେ
ମୁଁ ରାଗିଲେ ମିଛିମିଛିକା
ତୋ'ମନେ ଦୁଃଖ ଜମେ
ଦେଇଛି ତୋ ନାଆଁ...ଫୁଲେଇ ପ୍ରିୟା
ସେଇଥିପାଇଁ ହଁ ସେଇଥିପାଇଁ... । ।୨।

•

## (୨୪)

ମୁଁ ଖୋଜିବୁଲେ ଆଜି
ଏ ମନର ଅଗଣାରେ
ନିଛାଟିଆ ଜହ୍ନରାତି
ମିଠା ମିଠା ସେଇ ତାତି
ତୋ ମନର-ଇଲାକାରେ...। ।୦।

ମୁଁ ଥିବି ତୁ ଥିବୁ...
ଥିବ ଏଇ ଜହ୍ନ
ରାତିଥିବ ନିଦଥିବ...
ଥିବ ଆମ ସ୍ୱପ୍ନ
ତୁ ହସୁଥିବୁ...ମୁଁ ହସୁଥିବି
ଏକା ଏକା ନିରୋଳାରେ...। ।୧।

ଆଶାର ଭରସା ନେଇ...
ମନ-ବାଇଆ ବସା
ଝୁଲୁଥିବ ପବନରେ...
ନେଇ ବିଶ୍ୱାସ ନିଶା
ତୁ ହସୁଥିବୁ...ମୁଁ ହସୁଥିବି
ଏଇ ମଧୁ ଲଗନରେ...। ।୨।



## (୨୫)

ମୁଁ ଆଜି ହସୁଛି
ଜହ୍ନ ବି ହସୁଛି
ହସୁଛି ଏ ମଧୁରାତି
ଏ ହସରେ ଭରା
କେତେ ଯେ ବେଦନା
କେତେ ଯେ ବିରହ ତାତି । ।୦।
କଥା ଦେଇଥିଲ
ସାଥୀ ହୋଇ ଆମେ
ଚାଲୁଥିବା ହାତ ଧରି
ସୁଖରେ ହେଉ କି
ଦୁଃଖରେ ହେଉ
ଯିବାନି କାହାକୁ ଭୁଲି
ଛାତିତଳେ ସବୁ ରଖିଛି ସାଇତି
ସବୁ ମୁଁ ରଖିଛି ସାଇତି... । ।୧।
କଥା ରହିଗଲା
କଥାରେ କଥାରେ
ଛାଡ଼ି ଚାଲିଗଲ ତୁମେ
ଏକା ଏକା ମୁଁ ଯେ
ମଝି ବାଟଟାରେ
ଖୋଜୁଅଛି ନିଶି ଦିନେ
ରହିଗଲା ଖାଲି ତୁମରି ସ୍ମୃତି
ହାଏ...ରହିଲା ତୁମରି ସ୍ମୃତି ।୨।

•

## (୨୬)

ଜହ୍ନରେ ଜହ୍ନ ତୁ ଏମିତି କା ଜହ୍ନ
ବୁଝୁନା କେମିତି... ପିଆସୀ ମୋ ମନ
ମୁଁ କିଆଁ ଝୁରେ... ଜୋଛନା ରାତିରେ
ତୋ' ପାଇଁ ଭାଙ୍ଗିଯାଏ...
ମୋର ମିଠା ସପନ...। ।୦।

ତତେ ଦେଖି ନୀଳକଇଁ
ହସେ ସିନା ଖିଲିଖିଲି
ମୋ ମନର ଫୁଲବନ
ଉଦାସେ ଯାଏ ଉଜୁଡ଼ି
ତୁ ହସୁଛୁ ସିନା...ମନଖୋଲି ଏତେ
ମୋ ଦେହରେ ଲାଗିଯାଏ...
ତୋ କଳଙ୍କ ଚିହ୍ନ...। ।୧।

ତୁ ସିନା ପୂନେଇଁରେ... ଦିଶୁ ଏତେ ଉଜ୍ୱଳ
ଲୁହଧାରେ ଧୋଇଯାଏ...
ମୋ ଆଖିର କଜ୍ୱଳ
ବୁଝିବୁକି ଥରେ ମୋ ମନବନରେ
ଆଜି କିଆଁ ଭରେ
ଅବୁଝା ଏ ଦହନ...। ।୨।



## (୨୭)

କେତେ ଦୂରେ ତୁମେ ପକ୍ଷୀ
ଆକାଶର ଦରିଆରେ
ଉଡୁଥାଅ ଢେଉ କାଟି
ତମେ ମୋ ଖିଆଲୀ ପକ୍ଷୀ।
ତମେ ବି ପାଶେ ଆସନା...ମନ ମରିଯାଏ
ତମକୁ ଡାକି ଡାକି ଦିନ ସରିଯାଏ
ତମ ଫେରା ବାଟ ଚ୍ୱହିଁ...
ପଡ଼େ ମୁଁ ଥକି...। ।୦।

ପଞ୍ଜୁରୀରେ ଦୁଧଭାତ...ତମକୁ ରୁଚେନା
ମୋ ହାତର ପରଶ...ତମେ ବି ଲୋଡ଼ନା
ତମ ଫେରାବାଟ ଚ୍ୱହିଁ..
ପଡ଼େ ମୁଁ ଥକି... ।୧।

ବଇଶାଖେ ଜଳୁଥାଅ...ବର୍ଷାରେ ଭିଜୁଥାଅ
ବସନ୍ତର ଫୁଲ ବନେ...ଡେଣା ଝାଡ଼ି ଉଡୁଥାଅ
ତମ ମନ ବୁଝିବାକୁ
ନାହିଁ ଯେ ବାକି...। ।୨।



## (୨୮)

ଭୁଲ୍ ବାଟରେ ଚ଼ାଲିବାକୁ ସତେ
କିଏ ବା ଭଲପାଏ
ଚ଼ାଲୁ ଚ଼ାଲୁ କେବେ ନିଜ ଅଜାଣତେ
ଭୁଲ୍ ଟିକେ ହୋଇଯାଏ...। ।୦।

ଶିଉଳିରେ ଥରେ ଖସିଗଲେ ପାଦ
ଆଘାତ ମିଳଇ ଖାଲି
ସେ ମଣିଷ କେତେ ଦୁଃଖକୁ ସହେ
ଅନୁତାପେ ଜଳି ଜଳି
ଦୁନିଆଁ କାହିଁକି ଏ କଥା ବୁଝେନା
ମନ ତା'ର ଭାଙ୍ଗିଦିଏ...। ।୧।

ହାତଧରି କିଏ ସାଥୀ କରି ଯେବେ
ଅଧାବାଟେ ଦିଏ ଛାଡ଼ି
ଭଲ ଅବା ମନ୍ଦ ନ ବୁଝି ମନଟା
ଅବାଟରେ ଯାଏ ମାଡ଼ି
ଦୁନିଆଁ କାହିଁକି ଭରସା ଦିଏନା
ଅଧାବାଟେ ଛାଡ଼ିଦିଏ। ।୨।



## (୨୯)

ସ୍ମୃତିର-ଶାମୁକା ପଡ଼ିଛି ଘୁମେଇ
ସାଗରର ନୀଳ-ଲହରୀକୁ ଛୁଇଁ
ଯେଦିନ ସେ ଚେଇଁବ
ଏଇ କଥା କହିବ
ସମ୍ପର୍କ ଆମର...ଜନ୍ମ ଜନ୍ମପାଇଁ... ।୦।

ବୁକୁତଳେ ତା'ର ସାଇତା ମୋତିଟି
ନୂଆ ରୂପ ନୂଆ ରଙ୍ଗେ...ଉଠିବ ଚମକି
ଢେଉ ଦୋଳିରେ ଖେଳି
ନାଚିବ ଢଳି ଢଳି
ଆଗାମୀର ନୂଆ ବାରତା ଯେ ଦେଇ...। ୧ ।

ସ୍ମୃତି ଝରାଫୁଲ ଅତୀତ ସପନ
ଆଗାମୀ ତନୁରେ ଭରେ ଶିହରଣ
ଗ୍ଭଲିବ ସେ ପାଦ ଥପି
ସମୟକୁ ମାପି ମାପି
ଉଦାସୀ ନୟନେ ନୂଆ...ସ୍ୱପ୍ନ ଦେଇ...। ।୨।



## (୩୦)

କୁଆଁର ପୁନେଇ ଜହ୍ନ
    ଆଉ ଏ କୁଆଁରୀ ମନ
ଭାରି ଅଝଟିଆ ସିଏ ଭାରି ମନୁଆଁ
    ପୁନେଇଁ ରାତିଟା ପରି ଛନଛନିଆ... । । ୦ ।

କୁଆଁରୀ-ମନ-ସାଗର
    କେତେ ଢେଉଢେଉକା
ଆଖିର ସପନ ତା'ର
    କେତେ ମିଛିମିଛିକା
ବାଲିଘର ଗଢ଼େ...ଗଢ଼ି ପୁଣି ଭାଙ୍ଗି ଦିଏ
ହେଲେ ହୃଦୟତା' ନରମ ଫୁଲ ଅଗଣା... । । ୧ ।

ଏଇ ନୀଳ ସାଗର
    ଲହରୀ...ନୀଳ ଆକାଶ
ଦିଏ ସପନ କେତେ ସେ
    କେତେ ଦିଏ ବିଶ୍ୱାସ
ମନ ତା'ର ଜଉମୁଦ ଲଫାପାଟିଏ
ବୁଝିଗଲେ ଥରେ ଲାଗେ ଅତି ଆପଣା... । ୨ ।



## (୩୧)

କେତେବେଳେ ଫୁଲଶେଯେ
ଶୋଇବାକୁ ହୁଏ
କେତେବେଳେ କଣ୍ଟାରେ
ଚାଲିବାକୁ ହୁଏ
ଏଇ ତ ଜୀବନ...ସାଥୀ
କିଛି ବୁଝି ପୁଣି କିଛି ଅବୁଝା ରହିଯାଏ...। ।୦।

ଆଖି ଯା'କୁ ଭଲପାଏ...
ମନ ତା' ମାନେନା
ମନ ଯା'କୁ ମାନେ ଥରେ...
ଭୁଲି ଯେ ହୁଏନା
ଏଇ ତ ଜୀବନ...ସାଥୀ
ମନର ଖେଳରେ କେବେ ହୃଦୟ ଭାଙ୍ଗିଯାଏ...। ।୧।

ମରୁ ବାଲିଚର କେବେ
ମନକୁ ଡରାଏ
ବଇଶାଖି ଝନ୍‌ଜା ପୁଣି
ହୃଦୟ ଥରାଏ
ଏଇ ତ ଜୀବନ...ସାଥୀ
ଫଗୁଣର ଫଗୁରଙ୍ଗେ ମନକେବେ ଭରିଯାଏ...। ।୨।



## (୩୨)

ପାଦରେ ଘୁଙ୍ଗୁର ନାଇ
        ନାଚୁଛି ଶ୍ରାବଣ ଆଜି
        ରିମ୍‌ଝିମ୍-ରିମ୍‌ଝିମ୍...ବେପଥୁ ସୁରରେ
ତା' ନାଚରେ ତା' ଗୀତରେ...
        କଦମ୍ବର ଫୁଲଫୁଟେ ମୋ' ତନୁମନରେ...    । ୦ ।

ଏତେ ପରା ଅଝଟିଆ ଅମାନିଆ ସତେ ଏଇ
        ମତୁଆଲା ମନୁଆଁ ଶ୍ରାବଣ
କାହା କଥା ଶୁଣେ ନାହିଁ...ବ୍ୟଥା କା'ର ବୁଝେ ନାହିଁ
        ବୁଝେ ନାହିଁ କାହାର ସେ ମନ
କା' ଜୀବନେ ପ୍ରୀତି ଦେଇ...କା' ଜୀବନୁ ପ୍ରେମ ନେଇ
        ସିଏ ଖାଲି ନାଚୁଥାଏ...ନିଜ ଖିଆଲରେ...।    । ୧ ।

ଦିନ ନାଇଁ ରାତି ନାଇଁ...ନାଚେ ଖାଲି ଝୁମି ଝୁମି
        ମତୁଆଲା ଅବୁଝା ଶ୍ରାବଣ
ସ୍ନେହ ନାଇଁ ପ୍ରୀତି ନାଇଁ...ସାଥୀ ନାଇଁ ଭୀତି ନାଇଁ
        ନାହିଁ ତା'ର ଦରଦିଆ ମନ
କା' ଆଖିରେ ନିଦ ଦେଇ...କା' ଆଖିରୁ ନିଦ ନେଇ
        ସିଏ ଖାଲି ନାଚୁଥାଏ...ନିଜ ଖିଆଲରେ...।    । ୨ ।



## (୩୩)

ସତେ ମୁଁ ଯେମିତି... କାଠର କଣ୍ଢେଇ
ତମ ମନ ଖେଳଘରେ
ଯେମିତି ଚାହିଁବ... ସେମିତି ନାଚିବି
ତୁମ ଦିଆ ଇଶାରାରେ...। ।୦।

ମୋର ବୋଲି କିଛି କହିବା ପାଇଁକି
ଅଧିକାର ମୋର ନାହିଁ
ଭଲ ପାଇବାର-ଛଳନା ଜାଲରେ
ଛନ୍ଦି ଦିଅ ମିଛ କହି
ତମେ କ'ଣ ସତେ...ହସିପାର ଏତେ
ଆଖିର ତତଲା ଲୁହରେ...। ।୧।

ତମେ ଭାବ ମୋର ମନ, ମନ ନୁହେଁ
ସତେ ବା ତୁଠପଥର
ମିଛ ମମତାର ଦୁନିଆଁ ଭିତରେ
ମୁଁ ଅଲୋଡ଼ା ସହର
ତମେ କ'ଣ ସତେ...ଭଲପାଅ ଏତେ
ବୁକୁର କୁହୁଳା ନିଆଁରେ...। ।୨।

## (୩୪)

ଅଚିହ୍ନା ଏ ସହରେ
ତମେ ଲାଗ ନୂଆ ନୂଆ
ତମେ କୁହ ବଦଳିନ
କାଲିଥିଲ ଆଜି ଯାହା...। ।୦।

ମୁଁ ଦେଖୁଛି...ତମ ଆଖି...ସପନେ ବିଭୋର ହୋଇ
ମନଘେରି କରିନିଏ...କୁହୁକ ଜାଲ ବିଛେଇ
ଆଜି ଯେ ନିଜର ତୁମ...କାଲି ତାକୁ ପରକରି
ନୂଆ ମନଟିଏ ଖୋଜ...ମନର ସଉଦା କରି
ହେଲେ ତମେ କୁହ
କାଲି ଯାହା ଆଜି ତାହା। ।୧।

ମୁଁ ଦେଖୁଛି...ତମ ହସେ... ମୁକୁତା ଝରେନା ଆଉ
କାମନାର ଫୁଲ କେତେ...ଜଳିଉଠେ ଦାଉ ଦାଉ
ତମର ସେ ସୁନା ଦେହ କୁହୁକ କାହାଣୀ ପରି
ରଙ୍ଗ ବଦଳାଏ ନିତି...ସୁଖର ସଉଦା କରି
ହେଲେ ତମେ କୁହ
ମୋ ଆଖିର ଭୁଲ୍ ତାହା। ।୨।



## (୩୫)

ହରାଇଛି କେତେ ହିସାବ ରଖୁନି
ପାଇଛି ମୁଁ କେତେ ହିସାବ କରେ
ହରାଇବା ଦୁଃଖ ଦେଇଛି କଷଣ
ପାଇବାର ସୁଖ
ଡରେଇ ମାରେ... । ।୦।

କାହିଁକି ହାରିଲି...ଯାହା ଚାହିଁଥିଲି
ପାଶେ ଆସି ସବୁ ଗଲା ଉଜୁଡ଼ି
ଦୂର ଆକାଶର ଚନ୍ଦ୍ରମା ଭଳି
ହାତେ ଆସି ପୁଣି ଗଲା ଯେ ଫେରି
ହାରିଯାଇଥିବା ମଣିଷଟିଏ ମୁଁ
ଦୁଃଖର ନିଆଁ
ମୋ'ମନେ ଜଳେ। ।୧।

ପାଇଛି ମୁଁ ଯାହା ଚାହିଁ ତ ନ ଥିଲି
ପାଇବାର ସୁଖ ନିତି ଜଳାଏ
ମିଛ କୁହୁଡ଼ିରେ ପହଁରି ପହଁରି
ସୁଖର କବିତା ନିତି ମୁଁ ଗାଏ
ସୁଖ ସାଗରର ଉଉଁରୀରେ ଖେଳି
ମିଛ ସପନରେ
ମନକୁ ଭରେ। ।୨।

•

## (୩୬)

ତୁମକୁ ବିଦାୟ ଦେବାକୁ ହେ ବନ୍ଧୁ !
ମନ ମୋର ଚାହେଁ ନାହିଁ
କାଲି ପରି ଲାଗେ ଆସିଥିଲ ତୁମେ
ସୁଖର-ପସରା ନେଇ... । ।୦।

ଆଶା-ନିରାଶାର-ସାତରଙ୍ଗ ବନ୍ଧୁ
ଜୀବନରେ ଭରିଥିଲ
ଦୁଃଖ ବା ସୁଖରେ ହାରି ମେ ନ ଯାଇ
ହସିବା ଶିଖାଇଥିଲ
ଆପଣାର କରି ଚାଲିଯାଅ ବନ୍ଧୁ !
(ଆମ) କାହାଣୀ ତ ସରି ନାହିଁ... । ।୧।

ଅଧା ରହିଗଲା ଆମରି ସମ୍ପର୍କ
ରହିଲା ଅନେକ କଥା
ସମୟର-ପକ୍ଷୀ ଉଡ଼ି ଚାଲିଗଲା
ଛାଡ଼ି ସ୍ମୃତିର ଲେଖା
କ୍ଷମା କରିଦେବ ଦୋଷଥିଲେ ବନ୍ଧୁ !
ଆପଣାର ଭାବିନେଇ ।୨।



## (୩୭)

ନର୍ତ୍ତକୀ ମୁଁ ତୁମ
ଜୀବନର ରଙ୍ଗ ମହଲରେ
ଦିନରାତି ଖାଲି ନାଚୁଥାଏ ମୁଁ ଯେ
ତୁମ ଦିଆ ଇଶାରାରେ... । ।୦।

କହି ମୁଁ ପାରେନା...
ଅବଶ ମୋ ପାଦ...
ଆଉ ପାରିବିନି ନାଚି
କ୍ଲାନ୍ତ ମୋ ଦେହ...
ଉଦାସୀ ଏ ମନ
ତୁମେ କି ପାରନା ବୁଝି
ତୁମେ ସୁଖୀ ହୁଅ ତୁମ ସୁଖପାଇଁ
ଅନ୍ୟକୁ ଜାଳିବାରେ... । ।୧।

ତୁମେ ଭାବ ମୋର...
ମନ, ମନ ନୁହେଁ
ସତେ ଅବା ଖେଳଘର
ନିଜର ବୋଲିକି...
କହିବା ପାଇଁକି...
ନାହିଁ ମୋର ଅଧିକାର...
ହସିଲେ ହସିବି କାନ୍ଦିଲେ କାନ୍ଦିବି
ସବୁ ତୁମ ଖିଆଲରେ... । ।୨।



## (୩୮)

ଅଜଣା ବନର ଅଚିହ୍ନା ପକ୍ଷୀରେ
ଏ ବନେ ଆସିଲୁ କାହିଁ
ଅବୁଝା ସୁରରେ ଅଲେଖା ଗୀତିକା
ଦିବାନିଶି ଯାଉ ଗାଇ...। ।୦।

ଅଲିଭା ଅଗ୍ନି ଏ ବନ-ମନରେ
ଜଳୁଅଛି ଅବିରତ
ଅକୁହା କାହାଣୀ କହି ତ ହେଉନି
ମଣିବୁ କି ତୁହି ସତ
ବେପଥୁ ଜଗାଇ
ଉଦାସ ପରାଣେ
କି ଲାଭ ପାଇବୁ ତୁହି...। ।୧।

ଅଳପ ଦିନର ସହଚର ହୋଇ
ବ୍ୟଥା କି ପାରିବୁ ବୁଝି
ଅଦେଖା ରାଇଜ ବାରତା ଦେଇରେ
ଅଜାଣତେ ଯିବୁ ହଜି
ଅତୀତକୁ ଝୁରି
ହେବି ନିତି ନିତି
ଅଫେରା ତୋ ପଥ ଚାହିଁ। ।୨।



## (୩୯)

ଦେହ ଏକ ଜଡଘର
ମନ ଏକ ଭରା ନଈ...
ଦେହ ଜଳୁଥାଏ ପଛେ
ମନଯାଏ ବହି ବହି... ।୦।

ସପନ ଭାରି ମିଛେଇ
ଛପି ଛପି ଆସେ ନିତି
ଧରାଦିଏ କେବେ ପୁଣି
କେବେ ଦୂର ପ୍ରଜାପତି
ଭଲପାଏ ଖେଳିବାକୁ
ମିଛ ଭରସା ଦେଇ। ।୧।

ମନ ଆଉ ସପନର
ମଝିରେ ମୋ ଦୁଇ ଗୋଡ଼
କାହାକୁ କହିବି ନିଜ
କାହାକୁ କରିବି ପର
ଆଶାର ଦିହୁଡ଼ି ଜାଳି
ତଥାପି ଜୀଇବି ମୁହିଁ। ।୨।



## (୪୦)

ଏ ଗୀତ ଆଜି ଲେଖୁଛି ତୁମେ
ଗାଇବ ଦେଇ ସ୍ୱର
ଯେଉଁ ସ୍ୱରରେ ପାଇବି ଖୋଜି
ହଜିଲା ଦିନ ମୋର...। ।୦।

ଆକାଶେ ଜହ୍ନ ହସୁଛି ଆଜି
ଦେଖି ମୋ ଅଭିନୟ
ରଜନୀଗନ୍ଧା ଯାଉଛି ଝରି
ଦେଖି ମୋ ଆଖିଲୁହ
ମୁଁ ଖାଲି ଖୋଜେ...
ତୁମ ବୀଣାର
ହଜିଲା ଏକ ସ୍ୱର...। ।୧।

ଲେଖିଛି କେତେ କବିତା ସତେ
ଦେଇଛି ପୁଣି ଜାଳି
ପାଇନି ଯେଣୁ ତୁମ ଠିକଣା
ଜୀବନସାରା ଜଳି
ଗାଇବ ଥରେ ଏହି ଗୀତଟି...
ଅନୁରୋଧ
ଏ ମୋର...। ।୨।



## (୪୧ )

ଜହ୍ନ ତୁ ଆସିବୁନି
ମୋ ଝରକା ପାଖକୁ
ତୋ ଲାଗି ସହିବି କେତେ
ମିଛ ଅପବାଦକୁ
(ମୁଁ ) ମିଛ ଅପବାଦକୁ...। ।୦।

ତୁ ସିନା ରହିଛୁ ଦୂରେ...ନୀଳ ଆକାଶରେ
ତୋ ଇଚ୍ଛାରେ ହସୁଥାଉ...ଜୋଛନା ଜୁଆରେ
ମୋ ମନରେ ନିୟମର-ଲକ୍ଷ୍ମଣଗାର
ପାଦେ ମୋ ଶିକୁଳି ବନ୍ଧା ଏଇ ସଂସାରର
ମୁଁ କେମିତି ଡେଇଁଯିବି...
ଲକ୍ଷ୍ମଣ ରେଖାକୁ। ।୧।

ତତେ ଦେଖି ଦେଲେ ମନେ...ଇନ୍ଦ୍ରଧନୁ ଚହଲେ
ସାତସୁରେ ମନଭରେ...ଦୁନିଆଁକୁ ମୁଁ ଭୁଲେ
ତୋ ଦେହେ କଳଙ୍କ ସିନା...ତୋ ରୂପକୁ ସଜାଏ
ମୋ ଦେହେ କଳଙ୍କ ମତେ...କଳଙ୍କିନୀ କରାଏ
କେମିତି କହିବି ତୋତେ
ମୋ' ମନ କଥାକୁ...। ।୨।



## (୪୨)

କିଛି କଥା କହି ହୁଏ
କିଛି କଥା ରହିଯାଏ
ହୃଦୟରେ ଘର କରି
କିଛି ବ୍ୟଥା ସହି ହୁଏ
କିଛି ବ୍ୟଥା ବହି ଯାଏ
ଆଖିର ଲୁହରେ ଝରି... ।୦।

ମନ ସିନା ଏକ ବାଇଆର ବସା
ଅଛି ପୁଣି ନାହିଁ
ନାହିଁ ତା ଭରସା
ଆଜି ଯେଉଁ ମନ...ସପନରେ ଛନଛନ
କାଲି ସେ ସପନ ଭାଙ୍ଗେ...
ମନଯାଏ ମରି ମରି। ।୧।

କଥା କେବେ ଏକ ବାଟ ଭୁଲା ନଈ
ମନ ହେଲେ ବହେ ଦୁଇକୂଳ ଛୁଇଁ
ଆଜି ଯେଉଁ ନଈ ବହେ...ଦୁଇ କୂଳ ଛୁଇଁ
କାଲି ସେ ପାଲଟେ ମରୁ...
ମନ ତାକୁ ହୁଏ ଝୁରି ।୨।



(୪୩)

ମୋ ମନକୁ ନେଇ କେତେ
ଖେଳୁଛ ତୁମେ ଯେ ଖେଳ
ଅକାରଣେ ବିତିଯାଏ
ସ୍ୱପ୍ନ ଦେଖିବାର ବେଳ... । ।୦।

ବୟସ ଯାଉଛି ଫେରି
ସମୟ ରଥରେ ଚଢ଼ି
ଏ କଥା ବୁଝନା କିଆଁ
ରୁହ ମିଛେ ମନମାରି
ଆସ ଆମେ ଫେରିଯିବା
ଆଜି ଦୂର ଅତୀତକୁ
ମନଇଚ୍ଛା ଖେଳୁଥିବା
ବୋହୂବୋହୂକା ଖେଳ... । ।୧।

ମନର ସରାଗ ମରେ
ସଂସାର ଯାତନାରେ
ଏ କଥା ବୁଝନା କିଆଁ
ହୁଅ ଅଭିମାନେ ଘାରି
ଆସ ଆମେ ଫେରିଯିବା
ଆଜି ଦୂର ଅତୀତକୁ
ନଈକୂଳେ ଗପୁ ଗପୁ
ବିତିଯିବ ସଂଜବେଳ... । ।୨।

●

## (୪୪)

ମନେପଡ଼େ...
ଆଜି ମନେପଡ଼େ
ମୋର ସେ ପହିଲି ଲାଜ
ଜହ୍ନକୁ ଦେଖୁ ଦେଖୁ
ଫୁଲକୁ ଛୁଉଁ ଛୁଉଁ
ସରମି ଯିବାର ଭାବ...। ।୦।

ଲାଗୁଥିଲା ଭଲ...
ଏକା ଏକା ନିଜ ସାଥେ
ନିଜେ କଥା ହେବାକୁ
ଚାହୁଁଥିଲା ମନ...
ଆଇନାରେ ନିଜ ଛବି
ନିରେଖି ଦେଖିବାକୁ
ଅଚିହ୍ନା କାହାକଥା
ପଡ଼ିଗଲେ ମନେ
ଲାଗୁଥିଲା ଭାରି ପାପ...। ।୧।

ଲାଗୁଥିଲା ଭଲ...
ଫୁଲ ପ୍ରଜାପତି ଖେଳ
ଲୁଚି ଲୁଚି ଦେଖିବାକୁ
ଅଚିହ୍ନା ନାଆଁଟେ... ନଈ ବାଲିପରେ
ମିଛେ ମିଛେ ଲେଖିବାକୁ
କା' ସାଥିରେ କେବେ...ମିଶିଗଲେ ଆଖି
ଲାଗୁଥିଲା ଭାରି ପାପ...। ।୨।

•

(୪୫)

ସାତ ସାଗର ସେପାରେ... ସାତ ସାଗର ସେପାରେ
ସୂର୍ଯ୍ୟ ଯହିଁ ସୁନା ବୋଇତେ
ଭାସେ ଆଲୋକ ଜୁଆରେ
ଯିବି ମୁଁ...ଯିବି ମୁଁ ଏ ପାରିର ମାୟାଭୁଲି...
ସାତସାଗର ସେପାରେ...। ।୦।

ସେଇ, ନୀଳ ନୀଳ ନୀଳ ନୀଳ...ଢେଉର ପସରା
ତନ୍ଦ୍ରାହରା କରେ ମତେ...ଦେଇ ପ୍ରୀତି-ଇଶାରା
ସାଗରର ବୁକୁଚିରି...ଯିବି ମୁଁ ଗୋ ଯିବି ଚାଲି
ପ୍ରୀତିର-ବୋଇତେ ବସି...ବଜାଇ ମିଳନବଂଶୀ
ଯିବି ମୁଁ...ଯିବି ମୁଁ...
ଅଟକି ତା ବାହୁଡୋରେ...
ସାତସାଗର ସେପାରେ...। ।୧।

କୁହ ଆଗୋ ଜଳପରୀ...ମନ ଖୋଲି କୁହନା
କରିବନି ତୁମେ ମତେ ମିଛ ଏକ ଖେଳନା
ହେବା ଚିର ସହଚର... ସାଥୀ ଯୁଗ ଯୁଗର
ସାଗରର-ସଙ୍ଗୀତରେ...ହଜିଯିବା ସପନରେ
ଯିବା ଭାସି ଦୂରେ...
ବଳୟର ଆରପାରେ...
ସାତସାଗର ସେପାରେ...। ।୨।

## (୪୬)

ଡାକନା ହେ ସୌଦାଗର
ଆଉ ମତେ ଡାକନା
ପଡ଼ିଛି ମୁଁ ନିଦେ ଶୋଇ...
ଆଉ ମତେ ଡାକ ନାହିଁ
ତନୁମନେ ବିରହର
ନିଆଁ ଆଉ ଜାଳନା...। ।୦।

ତୁମ ପଥ ଚାହିଁ ଚାହିଁ...
ଯୁଗ ତ ଯାଇଛି ବିତି
ସପନ ଭାବିଛି ଯେବେ...
ପାଇ ନାହିଁ ମୁଁ ଯେ କିଛି
ଆସିବ ଆସିବ ବୋଲି...
ବହୁଦୂରେ ଦେଲଠେଲି
ଜଳିଗଲା ମରମର
ଯେତେ ସବୁ କାମନା...। ।୧।

ସାଗର ଢେଉରେ ହଜି...
ଯାଇଅଛି ମନ ଭିଜି
କବରୀର ଫୁଲ ଝରି...
ବୟସ ଯାଇଛି ଫେରି
ଦୂରେ ଥାଇ ପ୍ରିୟ ମୋର...
ଘେନ ପ୍ରୀତି ଉପହାର
ସପନରେ ନାୟିକା
ମତେ ଆଉ ସଜାନା...। ।୨।

●

## (୪୭)

ସପନର ଜାଲବୁଣି
କାନ୍ଦୁଛି ମୁଁ ତୁନି ତୁନି
ହରାଇଛି ଯାହା କାଲି ଆଉ ଆଜି
ଆଗାମୀ କାଲିର କେତେ
ଆଶା ମନେ ନେଇ। ।୦।

କିଏ ମୋ ନିଜର ଅବା କିଏ ପର
ପରଖିବାକୁ ପାଇନି ମୁଁ ବେଳ
କେତେ ମୁଁ ପାଇଲି କେତେ ହରାଇଲି
ହିସାବ ରଖିନି କରିନି ବି ମୂଲ
ଭାଗ୍ୟର ହାତେ ଛାଡ଼ିଦେଇ ସବୁ
ସମୟ ଯାଉଛି ବହି
ନଈଟିଏ ହୋଇ...। ।୧।

ମୁଁ ଦେଖୁଛି ଏଇ ସମୟ-ସୁଅରେ
କିଏ ଭାସେ କିଏ ଲାଗିଯାଏ କୂଳେ
କା'ପାଇଁ କି ସୁଖ ଯେତିକି ଅମୂଲ
କା'ପାଇଁ କି ଲୁହ ତା'ଠାରୁ ଭଲ
ବୁଝି ମୁଁ ପାରେନା ଜୀବନର ରୀତି
ଭାଗ୍ୟକୁ ଆଦରି ଚଳେ
ଯାତ୍ରୀଟିଏ ହୋଇ... ।୨।



## (୪୮)

ଆଗାମୀ କାଲିକୁ ଭେଟିବାକୁ ମତେ
ଲାଗୁଅଛି ଭାରି ଭୟ
ଏଇ ଜୀବନରେ ଗତକାଲି ଯେତେ
ଦେଇଗଲା ପରାଜୟ । ।୦।

କାଲିର ସୂର୍ଯ୍ୟ ଜାଳିବ ଜୀବନ
କାଲିର ଜହ୍ନ ହୋଇବ ମଳିନ
ଆଗାମୀ ରଜନୀ
ଦେବ ଯେ ସପନ
ନୟନେ ଅଶ୍ରୁ ଭୟ । ।୧।

ଗତକାଲି ଥିଲା ହୃଦୟର ସାଥୀ
ବୁଝୁଥିଲା ସିଏ ମନ ନିତି ନିତି
ଆସନ୍ତାକାଲିର
ଶୂନ୍ୟ ପଟୁଆର
ବ୍ୟଥା କି ବୁଝିବ କହ ।୨।



## (୪୯)

ଏଇ ମନ ଏକ ଭଗ୍ନ ରଙ୍ଗଶାଳା
ଅତୀତ ଲେଖେ ଯେ ଗୀତି...ଭରି କେତେ ମଧୁସ୍ମୃତି
ପଢ଼ିନିଅ ଥରେ... ହେ ବିଧୁର ମୁଖଶାଳା । ।୦।

ନର୍ତ୍ତକୀ ପଦ ରକ୍ତରଞ୍ଜିତ
ନୂପୂର ଗୁଂଜନେ ବିରହ ରାଗିଣୀ
ଶୂନ୍ୟ ପିଆଲା...ଶୂନ୍ୟ ହୃଦୟ
ସିକ୍ତ-ନୟନ ନୀରବ ଗ୍ୱହାଣି
ମୁଖର କାକଳୀ ଯେତେ
ମୂକସାକ୍ଷୀ ହୋଇ ସତେ
ମାପିନିଅ ଯେତେ
ଅକୁହା ହୃଦୟ ଜ୍ୱାଳା । ।୧।

ଆହତ ଲଗ୍ନ ସପନେ ମଗ୍ନ
ପ୍ରୀତିଝରା ରାକା ମଧୁର ରଜନୀ
ଝରା ପତ୍ରର ମର୍ମର ତାନେ
ମିଳନର ବଂଶୀ ତଥାପି ବାଜିନି
ଅବଶ ଗ୍ୱତକ ଆଜି
ଚକୋରୀ ଲୁହରେ ଭିଜି
ଧୋଇଦିଅ ବାରେ
ଜୀବନୁ କଳଙ୍କ କଳା । ।୨।

•

## (୫୦)

ଜୀବନ ତ ଅଧାଲେଖା ଗଳ୍ପଟିଏ
କେବେ ସ୍ୱପ୍ନ କେବେ ବିରହ ଦିଏ
କେବେ ଲାଗେ ଭରା ମେଘର ଛାଇ
କେବେ ପୁଣି ସେତ ଏକାକୀ ନଈ । ।୦।

ଏ ଜୀବନେ କେତେବେଳେ ମଧୁମଳୟ
କେବେ ପୁଣି ବୈଶାଖର ବହ୍ନିବଳୟ
କେତେବେଳେ ମିଳନର ମଧୁଲଗନ
କେବେ ପୁଣି ଉଜୁଡ଼ା ଏ ସବୁଜ ବନ
ଜୀବନ ତ ଏକ ଯୁଦ୍ଧର ଭୂଇଁ...
ଲଢ଼ିବା...ଏ ବାଜି ଜିତିବାପାଇଁ... । ।୧।

ଜୀବନରେ କେତେବେଳେ ସୁଖର ହାଟ
ଫୁଲ ଆଉ ମଧୁପର ନିଇତି ଭେଟ
କେବେ ପୁଣି ଛଳନାର ସାଗରଟିଏ
ଆଶା ଦେଇ ଜୁଆରରେ ଭସେଇ ନିଏ
ଜୀବନ ତ ଏକ ଯୁଦ୍ଧର ଭୂଇଁ...
ଲଢ଼ିବା...ଏ ଯୁଦ୍ଧ ଜିତିବାପାଇଁ । ।୨।



# (୫୧)

ମତେ ଆଜି ମିଳିଗଲା
ମନପକ୍ଷୀରାଜଟିଏ
ନିଜ ଇଚ୍ଛାରେ ଉଡ଼ିବି
ଯେତେ ଦୂର ଆଖି ପାଏ...। ।୦।

ନନ୍ଦନବନରେ ଅତିଥି ମୁଁ ହୋଇବି
ପାରିଜାତ ଫୁଲ ସାଉଁଟି
ମାଳାଟିଏ କରି ସରଗପରୀକୁ
ଦେବି ମୁଁ ଆଦରେ ଭେଟି
ଲାଜେ ଲାଜେ ସିଏ କରୁଥିବ ନାଇଁ ନାଇଁ
ହାତଧରି ତା'ର ପକ୍ଷୀରାଜରେ ବସାଇ
ମୁଁ ଯେ ଉଡୁଥିବି ଏଇ
ଧରାରୁ ସରଗ ଯାଏ...। ।୧।

ନୀଳସାଗର ବୁକୁ ସରାଗେ ଛୁଇଁବି
ଶାମୁକାରୁ ମୋତି ଗ୍ୟେରାଇ
ମାଳାଟିଏ କରି ସରଗପରୀର
ଗଳାରେ ଦେବି ଲମ୍ବାଇ
ଲାଜେ ଲାଜେ ସିଏ କରୁଥିବ ନାଇଁ ନାଇଁ
ମୋତିର ଉଆସେ ତାକୁ ରାଣୀ କରି ମୁହଁ
ମୁଁ ଯେ ହସୁଥିବି ଏଇ
ଜୀବନ ଥିବା ଯାଏ...। ।୨।



(୫୨)

ତୁମ ମନ ଗଙ୍ଗା ନଦୀ ତୀରେ...
ମୁଁ ଏକ ପାପ ତରୁ...
ଗଙ୍ଗାଜଳେ ଅବଗାହି
ପୁଣ୍ୟକୁ ମୁଁ ଆପଣାର କରେ ।୦।

ତୁମେ ଏକ ପୁଣ୍ୟ ତରୁ...ବିଷ ଫୁଲଟିଏ ମୁଁ
ସେ ତରୁର ଶାଖାରେ ଶାଖାରେ
ମଳୟର ଲଗ୍ନରେ
ବିଷ ମୋର ଢାଳିଦେଇ...
ଭିଜୁଥାଏ ତା'ର ଅମୃତରେ
ତୁମେ ଏକ ପୁଣ୍ୟ ସ୍ମୃତି...ପାପର ଅତୀତ ମୁଁ
ସେ ସ୍ମୃତିର ସଜଳ ମେଘରେ। ।୧।

ପ୍ରଥମ ଆଷାଢ଼େ ମୁଁ ଯେ ପାପ
ମୋର ଧୋଇଦେଇ
ପବିତ୍ରପାପୀ ମୁଁ ବୋଲାଏ
ଜୀବନର ପଥ ପରେ ଦୁଃଖକୁ ଦୂରେଇ ଦେଇ
ସୁଖର ବାରିରେ ଭିଜୁଥାଏ
ପୁଣ୍ୟର ପିଆଲା ତୁମେ
ତୃଷାରେ ଅଧୀର ମୁଁ ଯେ
ଭିଜୁଥାଏ ଅମୃତ ଧାରାରେ। ।୨।



## (୫୩)

ଇଚ୍ଛାଥିଲା ଦିନେ ହେବି ସୌଦାଗର
ସୁଖର ବଣିଜ କରିବି
ସବୁରି ମନରୁ ଦୁଃଖ ଲୁଟି ନେଇ
ହସର ଜୁଆର ଭରିବି । ।୦।

ଏ ଦୁନିଆଁ ଏତେ ଛଳନାରେ ଭରା
ସୁଖ ଭାବେ ଯାହା ମିଛର ପସରା
ସମ୍ପର୍କର ଏଠି କିଛି ମାନେ ନାହିଁ
ମନତଳେ ଜଳେ ନିରାଶାର ଜୁଇ
ଭାବୁଛି କେମିତି
ସୁଖରେ ସତେ ମୁଁ
କୂଳକୁ ବାହୁଡ଼ି ପାରିବି । ।୧।

ଥିଲା ମୋ' ଭରସା ବେଉସା କରିବି
ପ୍ରୀତି ମଣିମାଣିକରେ ପସରା ଭରିବି
ସୁନା ବୋଲି ଯା'କୁ ଭାବିଲି ମନରେ
ପିତଳ ପାଲଟି ଗଲା ମୋ ହାତରେ
ଭାବୁଛି କେମିତି ଭାଗ୍ୟ ଦୋଷଦେଇ
ମନକୁ ବୁଝାଇ ପାରିବି । ।୨।



## (୫୪)

ମୋ ହାତ ତିଆରି କାଗଜନଉକା
ଭସେଇ ଦେଇଛି ପାଣି ସୁଅରେ...
ମୋ ମନର ଯେତେ ଅକୁହା କଥା
ଲେଖି ଦେଇଛି ତାର ଛାତିରେ...। ।୦।

ତମ ଗାଁ ନଈ ତୁଠେ
ଅଟକି ଯିବ ସେ ଟିକେ
କଥା ମତେ ଦେଇଯାଇଛି
ତମେ ନ ପଢ଼ିବା ଯାଏ
ଯିବନି ସେ ଦୂରେ ଭାସି
କଥା ମତେ ଦେଇଯାଇଛି
ଭାସିଯିବା ଆଗୁ ଦୂରେ ବହୁଦୂରେ
ଭେଟିବ ମୋ' ରାଣ ଥରେ...। ।୧।

ତମ ହାତ ପରଶ...
ନ ପାଇବା ଯାଏ ଟିକେ
ଭଉଁରୀରେ ଖେଳୁଥିବ
ତମ ମନକଥା
ନ ଶୁଣିବା ଯାଏ ଖାଲି
ଭଉଁରୀରେ ଖେଳୁଥିବ
ତମେ ଯଦି ନ ଆସିବ... ଅଭିମାନେ
ଭେଟିବ ମୋ' ରାଣ ଥରେ...। ।୨।

•

## (୫୫)

ପାପ କରିବାକୁ ଲାଗେ ସିନା ଭୟ
ପାପୀକୁ ମୁଁ ଭଲପାଏ
ପାପ କରି ଯିଏ ବାରବାର କହେ
ମୁଁ ପବିତ୍ର ପାପୀଟିଏ... । ।୦।

ପାପ ପିନ୍ଧାଏ କଳଙ୍କ ମୁକୁଟ
ଦୁନିଆଁ କରଇ ଘୃଣା
ଏ କୂଳ ସେ କୂଳ ଦୁଇକୂଳ ଛୁଟେ
ପାପୀ ହୁଏ ବାଟବଣା
ସ୍ନେହର ପରଶ ପାଇ ଦୁଇ ଓଠେ
ହସ କେତେ ଭରି ଯାଏ... । ।୧।

ଟିକେ ଭୁଲ୍‌ପାଇଁ ବୁଝିପାରେ ନା ଯେ
ଭଲ ଅବା ମନ୍ଦ କିଏ
ଗୋଟିଏ ଭୁଲ୍‌କୁ ଲୁଚାଇବାପାଇଁ
ଭୁଲ୍ ଖାଲି କରୁଥାଏ
ଆଶାର ଦୀପଟେ ଜାଳିଲେ ତା ମନେ
ଭୁଲ୍ ସବୁ ବୁଝି ନିଏ... । ।୨।



(୫୬)

ସମୟ ନଈ ସୁଅରେ
କାଗଜ-ଡଙ୍ଗାଟେ ପରି
ଭାସିଯାଏ ଏ ଜୀବନ
ଭଉଁରୀରେ ଘୂରି ଘୂରି...। ।୦।

ଆସିଲେ ଝଡ଼,ବରଷା
ଖୋଜେ ସେ ଆଶା-ଭରସା
ଦୋହଲି ଯାଏ ନଉକା
ବାଜିଲେ ଢେଉର ଧକ୍‌କା
ବଞ୍ଚିବାର ନିଶା ପାଶେ
ମରଣ ଯାଏ ତ ହାରି...। ।୧।

ସୁନେଲି ସୂରୁଯ ଖରା
ରୁପା ଜୋଛନାର ଧାରା
ଅଶାର ମୁରୁଜ ବୁଣେ
ସୁଖର ସଉଦା କିଣେ
ଜୀଇବାର ନିଶା ପାଶେ
ଦୁଃଖ ସବୁ ଯାଏ ହାରି...। ।୨।



## (୫୭)

ମନକୁ ଛଳାଇ
ଖେଳିଛି ମୁଁ ସତେ
କେତେ ଲୁଚକାଳି ଖେଳ
ହୃଦୟ ଜଳାଇ
ତୋଳିଛି ମୁଁ ସତେ
କେତେ ମିଛ ବାଲିଘର...। ।୦।

ବାରବାର ମୁଁ ଯେ... ହାରିଛି ଖେଳରେ
ମନ ମୋ ପୋଡ଼ିଛି...କୁହୁଳା ନିଆଁରେ
ମନକଥା ଖୋଲି...କହି ମୁଁ ପାରିନି
ଆପଣାର କେହି... ଏ ମନ ଚିହ୍ନିନି
ଅନୁଭବୀ ସିନା
ବୁଝିବ ସେ ବ୍ୟଥା
ମନଭାଙ୍ଗି ଯୋଡ଼ିବାର... ।୧।

ଦୁନିଆଁ ଯାକର...ସନ୍ଦେହ ଢେଉରେ
ବାଲିଘର ଭାସି ଯାଇଛି ସୁଅରେ
କେହି କେବେ ପୁଣି...ହାତ ବଢ଼େଇଛି
ନୂଆ ବାଲିଘର ତୋଳିବା ପାଇଁକି
କି ଅଛି ଭରସା
କାହାକୁ ବା ସତେ
ଆପଣା ହୁଏ ଯେ ପର...। ।୨।



## (୫୮)

ଏନ୍ତୁଡ଼ି ନିଆଁରୁ ଜୁଇର ନିଆଁ
ଅଳପ ବାଟ ସେତ... ଅଳପ ବାଟ
ହାତ ବଢ଼େଇଲେ...ଘୁଞ୍ଚିଯାଏ ଦୂରେ
ପାଏନା ହାତ...ସତେ ପାଏନା ହାତ...। ।୦।

ଏନ୍ତୁଡ଼ି ନିଆଁରେ ଜୀବନ ଆରମ୍ଭ
ପ୍ରଥମ କବିତା କୁଆଁ କୁଆଁ ରାବ
ମନକୁ ଦିଏ ଯେ ସପନେ ସଜେଇ
ନୂଆ ସକାଳର ବାରତା ଯେ ଦେଇ
ସବୁ ଲାଗେ ଭଲ ଲାଗଇ ନିଜର
ସବୁ ଲାଗେ ଯେ ସତ... ଲାଗଇ ସତ। ।୧।

ଜୁଇର ନିଆଁରେ ଜୀବନର ଶେଷ
ଅଧାଲେଖା ଗଳ୍ପ...କିଛି ଅବଶୋଷ
ସଜଳ ଆଖିର ଅଶ୍ରୁ ଲେଖନୀରେ
ଅକୁହା ଦରଦ ଝରେ ନୀରବରେ
ଲାଗଇ ଅଚିହ୍ନା...ଲାଗେ ବି ଅଜଣା
ସବୁ ଲାଗେ ଯେ ମିଛ... ଲାଗଇ ମିଛ ।୨।



## (୫୯)

ହେ ସମୟ ମତେ
ଦିଅ ଗୋ ଫେରାଇ
ମୋର ସେ ହଜିଲା ଦିନ
ମୁଁ ଝୁରିମରେ
ଦିନରାତି କେତେ
ଦେଖି ତା'ର ପାଦ ଚିହ୍ନ...। ।୦।

ମତେ ଦିଅ ଗୋ ଫେରାଇ
ଗାଆଁ ଦାଣ୍ଡ ଧୂଳି ଖେଳ
ନଈତୁଠେ ଥିବା ମଜା
ରଜସଙ୍କ ଦୋଳି ଖେଳ
ଦିଅ ଗୋ ଫେରାଇ ସେଇ
ପରଜାପତିର ଦିନ...। ।୧।

ମତେ ଦିଅ ଗୋ ଫେରାଇ
ମୋ କଣ୍ଢେଇ ବାହାଘର
ଧୂଳିରେ ଭୋଜିଭାତ
ମିଛ କାନ୍ଦଣା ଲହର
ଦିଅ ଗୋ ଫେରାଇ ମତେ
ମୋର କଅଁଳ ମନ...। ।୨।



(୬୦)

ମୋର ଅଧାଅଛି ଗଳ୍ପଲେଖା
ମୋର ଅଧାଅଛି ସ୍ୱପ୍ନଦେଖା
ହେ ସମୟ ତୁମେ...ଏଡ଼େ ବେଦରଦୀ
କହୁଛ ସରିଲା ବେଳ
ଇଏ ମୋ' ଭାଗ୍ୟ ଲେଖା । ।୦।

ଆକାଶରେ ଜହ୍ନ...ଏବେ ବି ହସୁଛି
ମତେ ଚାହିଁ କେତେ...ଦୁଷ୍ଟାମୀ କରୁଛି
ସମୀର କହୁଛି...ଫୁଲ ବି କହୁଛି
ଶେଷକର ତୁମ ମନ କଥା
ହେ ସମୟ ତୁମେ...ଏଡ଼େ ବେଦରଦୀ
କୁହ ସପନ ସରିଲା...କଥା ତୁମ ରହିବ ଅଧା...। ।୧।

ମୋ ହାତ ତିଆରି...ସୁଖର ହାଟରେ
କେତେ ହସଖୁସୀ...ବିଜନ ବେଳାରେ
ଜୀବନ କହୁଛି...ହୃଦୟ କହୁଛି
କ୍ଳାନ୍ତ ନୁହଁ ତୁମେ ନୁହଁ ପରାଜିତ ।
ହେ ସମୟ ତୁମେ... ଏତେ ବେଦରଦୀ
କୁହ ସରିଲା ନାଟକ...ଖେଳତୁମ ରହିବ ଅଧା...। ।୨।



## (୭୧)

ତୁମଠୁ ଫେରିଲା ପରେ
ପାରିଛି ମୁଁ ବୁଝି
ଜୀବନ ନାଟକ ନୁହେଁ...
ସ୍ମୃତିର ଶାମୁକା ନୁହେଁ
ଜୀବନ ବି ନୁହେଁ ଏକ ବାଜି...। ।୦।

ଜନ୍ମ, ମରଣ ଭଳି
ହାରିବା...ଜିତିବା
ଜୀବନର ଦୁଇଟି ବେଳା
ଜିତିବାକୁ ଯିଏ ଯେତେ ଭଲପାଏ
ହାରିବାକୁ ଯିଏ...
ଯେତେ ଆପଣାଏ
ଜୀବନରେ ପାଏ ସବୁକିଛି...। ।୧।

ସୁଖ ଆଉ ଦୁଃଖ
ହସ, ଲୁହ ଭଳି
ଜୀବନର ଦୁଇଟି କଳା
ସୁଖ ତ ନ ଥାଏ
ଖାଲି ପାଇବାରେ
ଦୁଃଖ ବି ନ ଥାଏ ଖାଲି ହାରିବାରେ
ମନଠୁ ହାରିବାରେ ମଜା ଅଛି...। ।୨।



## (୬୨)

ସ୍ୱର୍ଗ ଏଠି... ନର୍କ ଏଠି...
ଏଇଠି ହସୁଛି ନନ୍ଦନବନ
ସୁଖ ବି ଏଠି...ଦୁଃଖ ବି ଏଠି
ଏଇଠି ଭରିଛି ପାପ ପୁଣ୍ୟ...। ।୦।

କିଏ ସେ କହେ ଭାଗ୍ୟ ବଡ଼
କିଏ ସେ କହେ କର୍ମ
କିଏ ସେ କହେ ପୁଣ୍ୟ ବଡ଼
କିଏ ସେ କହେ ଧର୍ମ
କିଏ ବା ବୁଝିଛି...ଏ ସବୁର ମାନେ
ସିଏ ବଡ଼...ବୁଝେ ଯା'କୁ ମନ...। ।୧।

କିଏ ବି କହେ ପାପୀ ଅନ୍ତିମେ
ଭୋଗେ ନର୍କବାସ
କିଏ ବି କହେ ପୁଣ୍ୟାତ୍ମା ଯିଏ
ପାଏ ସୁଖ ଅଶେଷ
ପାପ ପୁଣ୍ୟର ମାନେ କେ ବୁଝିଛି
ସିଏ ସତ, ବୁଝେ ଯା'କୁ ମନ...। ।୨।



## (୬୩)

ହେ ସମୟ ମତେ...
ଦିଅବାରେ କ୍ଷମା
ରଖି ମୁଁ ପାରିନି... କହିଥିଲି ଦିନେ ଯାହା
ଜୀବନର ଶେଷ ପାହାଚେ ଏକାକୀ
ହେଇଚି ଆଜି ମୁଁ ଠିଆ...। ।୦।

କଥା ଥିଲା ମୋର...
ତମ ସାଥେ ସାଥେ
ଚାଲୁଥିବି ବାଟ...ଥକିବିନି କେବେ
ନିଜ ଅଜାଣତେ...
ବାରବାର ଝୁଣ୍ଡି...
ମୁହଁ ଫେରାଇଛି...କ୍ଳାନ୍ତି ଅବସାଦେ
ଅଭିମାନେ ତମେ ଯାଇଛ ଚାଲି
ସାଥୀ ଖୋଜି ନୂଆ ନୂଆ...। ।୧।

କଥା ଥିଲା ମୋର...
ଦୁଃଖେ ଅବା ସୁଖେ...
ଡରିଯିବି ନାହିଁ... କଣ୍ଟକିତ ପଥେ
ଜୟ ପରାଜୟ...
ଲୋଡ଼ିବିନି କେବେ...
ଦୁଃଖ କରିବିନି ହାରେ ଅବା ଜିତେ...
କଥା ମୁଁ ରଖିନି...ତମେ ଗଲାପରେ
ମନରେ ଜଳୁଛି ନିଆଁ...। ।୨।

•

## (୬୪)

ଯାଯାବର ସମୟକୁ ଭରସା କେ କରିବ
ତା' ସାଥୀରେ ଭାବ ନିତି ନିତି କରି
ଝୁରି ମରିବ...। ।୦।

ମନହେଲେ...ଫଗୁଣରେ...
ବସାଏ ସେ ଫୁଲହାଟ
ପ୍ରୀତିର-ପସରା ମେଲି...
କରୁଥାଏ ନିତି ନାଟ
ଖିଆଲି ଝଡ଼ରେ ଫୁଲହାଟ ସେ ତ
ଉଜାଡ଼ି ଦେବ...। ।୧।

ମନହେଲେ...ହସୁଥିବ...
ଓଠ ଦୁଇକୂଳ ଛୁଇଁ
ବହୁଥିବ...ମନତଳେ...
ସାଢ଼ି ପୁଣି ଭରା ନଈ
କେବେ ବେଦରଦୀ...
ହୃଦୟରେ ଜୁଇ ନିଆଁ ସେ ତ
ସଜେଇ ଦେବ...। ।୨।



## (୬୫)

ବୟସୀ ଦେହକୁ...ଯେବେ ଫଗୁଣ ଛୁଏଁରେ
ସବୁ ଲାଗେ ରୂପମୟ ଅଳସ ଭାଙ୍ଗେ ସମୟ
ମୁରୁକି ହସେରେ...। ।୦।

ଋତୁ ବଦଳେ...
ବଦଳେ ଆକାଶର ରଙ୍ଗ
ବଦଳେ ପ୍ରୀତି ଜୀବନର ରଙ୍ଗ
କାମନାର ନୀଳକଇଁ...
ମରମରେ ଉଠି ଚେଇଁ
ହସେ ନୀରବରେ...। ।୧।

ମନ ବଦଳେ...
ବଦଳେ ମଳୟର ଠିକଣା
ସ୍ୱପ୍ନ ବଦଳେ...
ବଦଳେ ମଲାଜହ୍ନ ଜୋଛନା
ଇଚ୍ଛାହୁଏ ନୂଆକରି...
ଫୁଟିବାକୁ ଫୁଲହୋଇ
ଅତି ଗୋପନରେ... ।୨।



## (୬୬)

ହସଠାରୁ ଲୁହ
ମନଠାରୁ ଦେହ
ଯେତିକି ଦୂର...
ସମ୍ପର୍କର ରଙ୍ଗ ସେତିକି ସୁନ୍ଦର...। ।୦।

କଥା କହିଦେଲେ...
ଛାତିତଳେ ରହିଯାଏ ଅଲିଭା
ମନ ଛୁଇଁଦେଲେ...
ଦାଗ କେତେ ଲାଗିଯାଏ ଅଦେଖା
ଛାଇଠୁ ଆଲୁଅ... ଯେତିକି ଦୂର
ମନର-ମଣିଷ...
ସେତିକି ନିଜର...। ।୧।

ଅବାଟରେ ଗଲେ...
ପାଦରୁ ଝରଇ ଲହୁ
ସାଥୀ ଚାଲିଗଲେ...
ଜୀବନ ଅଚିହ୍ନା ମରୁ
ମିଛଠାରୁ ସତ...ଯେତିକି ଦୂର
ଜୀବନରେ ସାଥୀଟିଏ
ସେତିକି ନିଜର...। ।୨।



## (୬୭)

ତମେ ଦେବ ସ୍ୱପ୍ନଟିଏ
ମୁଁ ଆଙ୍କିବି ଛବି
ତମେ ଦେବ ଘରଟିଏ
ମୁଁ ସଜାଇବି । ।୦।

ନ ହେଲେ ନାହିଁ ସେ ଘର
ଆକାଶଠୁ ବଡ଼
କାନ୍ଥ ତା'ର ଗଢ଼ା ହେବ
ଆମ ବିଶ୍ୱାସର
ତମେ ଦେବ ହସ ଟିକେ...
ମୁଁ ବାଣ୍ଟିବି ଖୁସି
ତମେ ଦେବ ମନଟିଏ...
ମୁଁ ସାଇତିବି । ।୧।

ସେ ଘର ନ ହେଉ ପଛେ
ଜହ୍ନ ରାଇଜରେ
ଅଗଣା ତା' ହସୁଥିବ
ପ୍ରେମ-ଜୋଛନାରେ
ତମେ ଦେବ ସ୍ନେହ ଟିକେ
ମୁଁ ହସୁଥିବି...
ତୁମ ପ୍ରୀତି ବରଷାରେ
ନିତି ଭିଜୁଥିବି । ।୨।



## (୬୮)

ତୁ ଅବୁଝା ଶ୍ରାବଣୀ...
ତୁ ଭାରି ମିଛେଇ ତୁ ଭାରି ଫୁଲେଇ
ଆସିବୁ ଆସିବୁ କହି...
ଆସିଲୁ ନାହିଁ
କଥାଦେଇ କଥା ରଖିଲୁ ନାହିଁ...। ।୦।

ଲେଖିଥିଲୁ ଚିଠି...
କଳା କଳା ବଉଦ କାଳିରେ
ତୁ ବଉଦ କାଳିରେ...
ଖେଳିବୁ ତୁ ଦୋଳି...
ଆମ ଗାଁ ତୋଟା ଗହଳରେ
କୁଆଁରୀ ମେଳରେ
ତୋ ବାଟ ଚାହିଁ ଚାହିଁ...ଝୁରିଲା କୁଆଁରୀ ମନ
ରହିଲୁ କେଉଁ ଦେଶେ... ଠିକଣା ଭୁଲିଯାଇ...। ।୧।

ରଖିଥିଲି ତୋ'ପାଇଁ
କଦମ୍ବର କଳାମେଘୀ ପାଟ
କଳାମେଘୀ ପାଟ...
ଅଭିମାନୀ ନୀଳକଇଁ
ଚାହିଁଥିଲା ବାଟ...ଚାହିଁଥିଲା ବାଟ
ମନେ ମନେ ଭାବୁଥିଲି...ଶ୍ରାବଣୀ ଭାରି ଚଗଲି
ମନେଇବି ତାକୁ ମୁଁ ଯେ ମେଘମହ୍ଲାର ଗାଇ... ।୨।



## (୬୯)

ଝରକା ପାଖର ଜହ୍ନ
        ମୋ ଝରକା ପାଖର ଜହ୍ନ
ଛନଛନିଆ ବୟସ ତୋର
                କନକନିଆ ମନ...।        । ୦ ।

**ଝରକା** ମୁଁ ଖୋଲିଦେଲେ...ମତେ ଦେଖି ହସୁ
**ମିଛେ** ମିଛେ ରାଗୁ ପୁଣି... ମିଛେ ମିଛେ ରୁଷୁ
        ମୁଁ ଡାକିଲେ ପାଖକୁ ମୋ...ଦୂରେ ଯାଇ ରହି
        ମୁହଁକୁ ଫୁଲେଇ କହୁ... ଆଜି ନୁହଁ କାଲି
ଝରକା ପାଖର ଜହ୍ନ ମୋ... ଝରକା ପାଖର ଜହ୍ନ
ଚୁଲୁଚୁଲିଆ ବୟସ ତୋର...
                ଗୁଲୁଗୁଲିଆ ମନ...।        । ୧ ।

ଝରକା ସେପାଖେ ତୋ ରୂପ... ରୋଶଣି ଯେ ଜଳେ
ଏ ପାଖରେ ବସି ମୁଁ...ସ୍ୱପ୍ନ ଜାଲ ବୁଣେ
        ତତେ ନ ଦେଖିଲେ ଦିନେ ଯୁଗପରି ଲାଗେ
        ସବୁଦିନ ହସୁଥା'ନ୍ତୁ...ମୋ ଝରକା ପାଖେ
ଝରକା ପାଖର ଜହ୍ନ ମୋ... ଝରକା ପାଖର ଜହ୍ନ
ରଙ୍ଗରଙ୍ଗିଆ ଦେହଟା ତୋର...
                ରସରସିଆ ମନ...।        । ୨ ।



## (୨୦)

ଶ୍ରାବଣରେ ଶ୍ରାବଣ...
        ପ୍ରେମ ହୁଏ ଦି'ଗୁଣ...
                ତୋ ପରି ସାଥୀଟେ ପାଇ
ମନ ସଙ୍ଗେ ମନକୁ...
        ଦେହ ସଙ୍ଗେ ଦେହକୁ
                ଯୋଡ଼ି ଦେଉ
                        କାଉଁରୀ ଛୁଆଁଇ...। ।୦।

ତତେ ଦେଖି ନୀଳକଇଁ... ମରିଯାଏ ଲାଜେ
କଦମ୍ବ କୁଆଁରୀ ଦେହେ...ଶିହରଣ ଜାଗେ
        ମନ-ବନହଂସୀ ଖୋଜିବୁଲେ ନୂଆ ଠିକଣା
        ଆପଣା ପାଲଟେ ଯିଏ ଥିଲା ଦିନେ ଅଚିହ୍ନା
ଶ୍ରାବଣରେ ଶ୍ରାବଣ...ମତେ କରୁ ଆନମନା
                ମନେ ଅକୁହା
                        କାହାଣୀ ଜଗାଇ...। ।୧।

ଦେହ-ବନେ ସବୁଜିମା... ତୋ ପରଶ ପାଇ
ହୃଦୟ ଉଚ୍ଛୁଳେ ସତେ... ଜୁଆରିଆ ନଈ
        ମତେ ଲାଗେ...ମୁଁ ଏକ ପିଆସୀ ପ୍ରେମିକ
        ଭଲଲାଗେ ନୀରବତା...ପାଲଟେ ଭାବୁକ
ଶ୍ରାବଣରେ ଶ୍ରାବଣ...ଏତେ ଖିଆଲି ଏ ମନ
                ଚମକଇ ଦେଖି
                        ନିଜେ ନିଜ ଛାଇ...। ।୨।

●

## (୭୧)

ସ୍ୱପ୍ନ...ସେ ଯେ ଏକ ଅଦେଖା ଛବିର ନାଆଁ
ସାଥୀ...ସେ ଯେ ଏକ ଅଜଣା ଝିଅର ନାଆଁ... ।। ୦ ।

ସ୍ୱପ୍ନରେ ଓଠୁ ଝରେ...
ମମତା ମହକେ ଭିଜି ଫୁଲ
ସାଥୀ...ମନେ ଆଶା ଦୀପ ଜଳୁଥାଏ ନୀରବରେ
ଦିଏନା କେହି ତା' ମୂଲ
ଦୁଃଖ...ସେ ଯେ ଏକ ଅଲିଭା ନିଆଁ
ଜାଳେ...କେତେ ମନ
ଠିକଣା କେହି ରଖେନା...। ।୧।

ମନ ଯେ...ଏକ ଅବୁଝା ଗୀତି...
ମାନେ ତା'ର ନାହିଁ କିଛି
ଜୀବନସାରା...ଜଳି ଜଳି ବି...
ପାରେ ନାହିଁ ଥରେ ବୁଝି...
ପ୍ରୀତି...ସେ ଯେ ଏକ ଅଲଗା ଗୀତିର ନାଆଁ
ଶାନ୍ତି...ସେ ଯେ ଖାଲି
ନିରାଶାରେ ଘେରା ଧୂଆଁ...। ।୨।



## (୭୨)

ନାଚି ନାଚି ଯାଏ ମୋର
ସପନର ବୋଇତ
ତୁମ ବେଳାଭୂମି ତୀରେ
ଅଟକି ସେ ଯିବତ ...। ।୦।

ରୁଷ ନାହିଁ ପ୍ରିୟା ମୋର... ଅଭିମାନେ ରୁହନା
ଅନୁତାପେ ଜଳି ଆଉ...ମତେ ଏତେ ଜଳାନା
ତୁମେ ମୋ ବଂଶୀର ସୁର...
କବିତାର ଛନ୍ଦ
ସୁରବିନା କେମିତି ଯେ
ଗାଇବି ମୁଁ ଗୀତ...। ।୧।

ସନ୍ଦେହ କର ନାହିଁ ଭୁଲ୍ ମତେ ବୁଝନା
ବୟସର ବାଧା କେବେ ପ୍ରୀତି...ସତେ ବୁଝେନା
ଯୁଗ ପରେ ଯୁଗ କେତେ...
ଯାଇଛି ଯେ ବିତି
ଜୀବନ ସାରା ଖୋଜିଛି
ମୋ' ମନର ମିତ... ।୨।



## (୭୩)

ରକ୍ତକରବୀ ନ ହୋଇ ହୁଏ ମୁଁ
ତୁମ ବନେ ଝରାଶେଫାଳୀ
ପାହାନ୍ତି ନିଦରେ ପଡ଼ିଲେ ଘୁମାଇ
ମୁଁ କବରୀରୁ ଯିବି ଝରି...। ।୦।

ତୁମରି କପାଳ...କୁଙ୍କୁମ ନ ହୋଇ
ହେବି ମୁଁ ଚନ୍ଦନଗାର
ତୁମରି ସୁନ୍ଥାରେ ସିନ୍ଦୂର ହୋଇ
ହେବି ମୁଁ ହସ ଓଠର
ଆଖିର କଜ୍ଜଳ
ହୋଇ ଧୋଇଯିବି
ମୁଁ ଅଶ୍ରୁ ପଡ଼ିଲେ ଝରି...। ।୧।

ତୁମ ବୀଣା ତାରେ...ମୋ ମନ-କବିତା
ନ ପାଇବ ଯେବେ ସୁର
ତୁମ ନୟନରେ ମୋ ଲାଗି ଯଦି
ନ ଭରିବ ପ୍ରୀତି ଝର
କୋହର ଉଚ୍ଛୁଳା
ସୁଅଟିଏ ହୋଇ
ମୁଁ କଣ୍ଠରୁ ଯିବି ଝରି...। ।୨।



## (୭୪)

ପାନ୍ଥଶାଳା କି ମନେ ରଖିପାରେ...
ଦୂର ବିଦେଶୀର ଠିକଣା
ସେ କାହୁଁ ବୁଝିବ ଅଭିଶାପେ ଜଳେ
ପଥିକ ମନର ବେଦନା ।୦।

ସପନରେ ଖେଳି ନିତି ହୋରି ଖେଳ
ମନକୁ ରଙ୍ଗୀନ କରେ
ବୁକୁଭରା ଯେତେ ଅସରା ପୀରତି
ଅଜଣା ନିଶାରେ ଘାରେ
ଭଲପାଇବା ତା'
କେତେ ଯେ ଗଭୀର
ସିଏ ତ ବୁଝିପାରେନା...। ।୧।

ପାହିଗଲେ ନିଶି କଥା ସରିଯାଏ
ବ୍ୟଥାର ବୋଝକୁ ବୋହି
ଚାଲୁଛି ପଥିକ ଅସରନ୍ତି ପଥେ
ଚଲାପଥ ନିତି ଖୋଜି
ମନକୁ ବୁଝିବା
ଭଳି ଜଣେ କେହି
ମନ ତ ଖୋଜିପାଏନା...। ।୨।



## (୭୫)

କଥା ଏକ ଅସୂର୍ଯ୍ୟ କୋଣାର୍କ
ବଳାର-କଳଙ୍କ-ଭରା
କଥା ଏକ ବ୍ୟଥାର-ପାହାଡ଼
ବିଜନ-ସାଗର-ବେଳା ।୦।

ମରମକୁ ଛୁଇଁ ଯାଏ ଯେବେ କଥା
ଜୁଆରେ ଭରେ ଛାତି
ଦିନସବୁ ଲାଗେ ସ୍ୱପ୍ନର-ଶ୍ରାବଣ
କାମନାର ନୀଳରାତି
ଛୁଇଁ ଦେଇଯାଏ
ଅଦିନ ଫଗୁଣ
କବିତାର ମଧୁମେଳା ।୧।

ପଦିଏ କଥାରେ ଭାଙ୍ଗିଯାଏ ଯେବେ
ହୃଦୟର-କାଚଘର
କୁହୁଳା ନିଆଁର ଅଗନିରେ ଜଳେ
ଶବଦ ଶୁଭେନା ତା'ର
ଅଦିନ କୁହୁଡ଼ି
ପଥହରା କରେ
ଅସହଣୀ ତା'ର ଜ୍ୱାଳା ।୨।



(୭୬)

ଆଜି ଏ ଶ୍ରାବଣେ
ମନେପଡ଼େ ଜଣେ
ଯିଏ ଘର କରି ରହିଛି ଏ ମନେ। ।୦।

ଶ୍ରାବଣ ଆସିଲେ...ବିଜୁଳି ଚମକେ
ଯା' ମନ ଆକାଶରେ
ଭାବିବା ଆଗରୁ...ବରଷି ସେ ଯାଏ
ଆଖିର ପଲକରେ
ସିଏ ମନେପଡ଼େ
ପ୍ରତିଟି ମୁହୂର୍ତ୍ତେ
ଆଉ ସବୁଦିନେ...। ।୧।

ଶ୍ରାବଣଠୁ ବେଶୀ...ହୁଏ ସିନା ଖୁସି
ମଉସୁମୀ ଆସିଗଲେ
ଭିଜାଏ ବର୍ଷାରେ...ମରେ ମୁଁ ଲାଜରେ
ହାରେ ମୁଁ ତା' ପାଶରେ
ଲୁଚାଇଛି ତାକୁ
ମନ ଗନ୍ତାଘରେ
ନୀରବେ ଗୋପନେ। ।୨।

•

## (୭୭)

କାଗଜଫୁଲ ମୁଁ କାଗଜଫୁଲ
ରୂପ ସିନା ମୋର... ଚହଟ ଚମକ
ମଧୁପ ବୁଝେନା ମୋର ମୂଲ। ।୦।

ମୋର କିବା ଦୋଷ
ଜନମ ଯେ ଦେଲା
ବାସ ଟିକେ ଦେଲା ନାହିଁ
ଅସରା ଅସରା ରଙ୍ଗର ପସରା
ହୃଦୟକୁ ଛୁଏଁ ନାହିଁ
ବାସ, ରସ, ମୋର ନ ଥାଉ ପଛକେ
ମନ ମୋର ପରା ଅମୂଲ ମୂଲ...। ।୧।

ମୋର କିବା ଦୋଷ
ଶିଖିନି ମୁଁ ଯଦି
ଆଖିରେ କଥା କହିବା
କା' ନିଦ ଠେରେଇ...ଗୋପନେ ମରମେ
ସପନ ସାଥୀ ହୋଇବା
ବନେ-ଉପବନେ ଝଲସୁ ଥାଏ ମୁଁ
ମନ ମୋର ପରା ଅମୂଲମୂଲ। ।୨।



## (୭୮)

ମୋ ଗୀତକୁ ପଢ଼ି
ତୁମେ ତ ଆସିବ
ଖୋଜି ଖୋଜି ଦିନେ ମତେ
ମୁଁ ଦେଖିବି ତୁମ
ପଥର ଛାତିଟା
ତରଳି ଯାଇଛି ସତେ । ।୦।

ସୁର ଦେଇ ଯେବେ... ଗାଇବ ମୋ ଗୀତ
ଅକୁହା କଥା ମୋ ବୁଝିବ ଗୋ ମିତ
ବୁଝି ତ ପାରିବ...
ମରମର ବ୍ୟଥା
ଅସରା କାହାଣୀ ଯେତେ...। ।୧।

ଆଖିରୁ ତୁମର... ଅଶ୍ରୁ ଝରିଯିବ
ନିଜ ଲୁହ ନିଜ ହାତେ ପୋଛିଦେବ
ଝୁରି ଅତୀତକୁ...
ଅନୁତାପେ ଜଳି
ବେଦନା ବୁଝିବ ସତେ...। ।୨।



## (୭୯)

ପ୍ରଦୀପର ଶିଖା ଜଳି ଜଳି ଲିଭେ
ଜଳିବାରେ ସୁଖ ପାଏ
ଦହନକୁ ସହି ଓଠଚପି ରହେ
ବେଦନା ବୁଝିନି କିଏ।  ।୦।

ଆଲୋକ ଧାରାରେ ଅମୃତ ଢାଳିଛି
ଅନ୍ଧକାର ଲୁଟିନେଇ
କୁଟୀର କାହାର ଆଲୋକିତ କରେ
ବାସର ପ୍ରଦୀପ ହୋଇ
ଅନ୍ଧାର ଦେଇଛି
ଯାତନା ଯେ କେତେ
ସେ କଥା ବୁଝିଛି କିଏ...।  ।୧।

ତଥାପି ଜୀବନେ ଦୁଃଖ ତ କରିନି
ଦରଦୀ ସାଥୀ ନ ପାଇ
ପ୍ରତିଦାନ କେବେ ଗ୍ରହିଁନି ଜୀବନେ
ଜଳୁଥାଏ ଅନ୍ୟପାଇଁ
ତା' ଆଲୋକେ ଯଦି
ଜଗତ ହସୁଛି
ଜୀବନ କି ଧନ୍ୟ ନୁହେଁ।  ।୨।



## (୮୦)

ଭଙ୍ଗା ମନକୁ...ପଗ୍ଧରେ କେ ଯଦି
କାହିଁକି ଭାଙ୍ଗିଲା ବୋଲି
କି ଉତ୍ତର ଅବା ଦେବ ସିଏ କୁହ
ଆଉ କି ହୋଇବ ଯୋଡ଼ି ।   ।୦।

ମନ କେବେ ଭାଙ୍ଗେ
ଛଳନାର ବିଷପିଇ
ଭାଙ୍ଗିଦିଏ କିଏ
କଥାର ଆଘାତ ଦେଇ
ପ୍ରତାରଣା କରି ମନ ସାଥେ ଖେଳି
ଦିଏ କେ ସପନ ଜାଳି ।   ।୧।

ମନ କେବେ ଭାଙ୍ଗେ
ପାଇ ଦୂରେଇ ଦେବାରେ
ଭାଙ୍ଗିଦିଏ କିଏ
ଠେଲି ଢଳ ଭଉଁରୀରେ
କୁହୁଡ଼ିର ଘର ତୋଳି ଈର୍ଷାରେ
ଦିଏ କେ ମନକୁ ଜାଳି ।   ।୨।

●



ନାମ : ଶ୍ରୀମତୀ ପ୍ରମିଳା ପତି

ଜନ୍ମ : ୧୯୫୯ ମସିହା

ଜନ୍ମସ୍ଥାନ : ବାଲିଆ, କେନ୍ଦ୍ରାପଡ଼ା

ପିତା : ୰ ସଚ୍ଚିଦାନନ୍ଦ ପତି

ମାତା : ଶ୍ରୀମତୀ ବିଦ୍ୟୁତ୍‌ଲତା ପତି

ସ୍ୱାମୀ : ଶ୍ରୀଯୁକ୍ତ ରବି ମିଶ୍ର

ଶ୍ରୀମତୀ ପ୍ରମିଳା ପତି ଏକାଧାରରେ ଜଣେ ସୁଗୃହିଣୀ, ଆଦର୍ଶ ଜନନୀ, ସ୍ନେହବତ୍ସଳା ଶିକ୍ଷୟିତ୍ରୀ, କବି, ଗାଳ୍ପିକା, ଗୀତିକାର ଓ ନାଟ୍ୟକାରଭାବେ ସୁପରିଚିତା। ତାଙ୍କ ଲେଖନୀ ନିସୃତ ବହୁ ଗଳ୍ପ, କବିତା, ଗୀତିକବିତା, ହାସ୍ୟ ଓ ବ୍ୟଙ୍ଗ ରଚନା ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକା ତଥା ରାଜ୍ୟସ୍ତରୀୟ ସଂକଳନମାନଙ୍କରେ ପ୍ରକାଶିତ ହୋଇ ପାଠକ, ପାଠିକାଙ୍କଦ୍ୱାରା ସମାଦୃତ। ୧୯୮୯ ମସିହାରୁ ସେ ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ଓ ନାଟ୍ୟକାର।

ପ୍ରଜ୍ଞା ଶିଶୁ-କିଶୋର ସାହିତ୍ୟ ସଂସଦ, ସୁଲେଖା, ସାହିତ୍ୟବାର୍ତ୍ତା, ଉଦୟଭାନୁ ସାହିତ୍ୟ ସଂସଦ, ଫକୀରମୋହନ ସ୍ମୃତି ସଂସଦ, ରାଜ୍ୟ କଳା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ମାଧବାନନ୍ଦ ସ୍ମୃତି-ସଂସଦ, ବନଜ୍ୟୋତ୍ସ୍ନା ସାହିତ୍ୟ ସଂସଦ, ଶ୍ୱେତସଂକେତ ପ୍ରଭୃତି ବହୁ ଅନୁଷ୍ଠାନ ତରଫରୁ ସେ ସମ୍ମାନିତା ଓ ସମ୍ବର୍ଦ୍ଧିତା ହୋଇଛନ୍ତି।

ତାଙ୍କ ରଚିତ 'ଶତାବ୍ଦୀର ଯନ୍ତ୍ରଣା' (କବିତା ସଂକଳନ), 'ଅହଲ୍ୟା' (କ୍ଷୁଦ୍ରଗଳ୍ପ ସଂକଳନ) ପ୍ରକାଶିତ ହୋଇ ଆଦୃତି ଲାଭ କରିଛି। 'ଝରକା ପାଖର ଜହ୍ନ' (ଆଧୁନିକ ଗୀତି-କବିତା ସଂକଳନ) ଲେଖିକାଙ୍କର ତୃତୀୟ ଅର୍ଘ୍ୟ।